# କେନୋପନିଷଦ୍

ତଦାତ୍ମନି ନିରତେ ଯ ଉପନିଷତ୍ସୁ ଧର୍ମାସ୍ତେ ମୟି ସନ୍ତୁ,
ତେ ମୟି ସନ୍ତୁ ॥ ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।



ଓଁ ଆପ୍ୟାୟନ୍ତୁ ମମାଙ୍ଗାନି ବାକ୍ ପ୍ରାଣଶ୍ଚକ୍ଷୁଃ ଶ୍ରୋତ୍ରମଥୋ
ବଳମିନ୍ଦ୍ରିୟାଣି ଚ ସର୍ବାଣି । ସର୍ବଂ ବ୍ରହ୍ମୌପନିଷଦମ୍ ।

**ସତ୍ୟାନନ୍ଦ ଚମ୍ପତିରାୟ**

ଉପନିଷଦ୍ ଗ୍ରନ୍ଥମାଳା : ଦ୍ଵିତୀୟ ପୁଷ୍ପ

# କେନୋପନିଷଦ୍

ସତ୍ୟାନନ୍ଦ ଚମ୍ପତିରାୟ

ଶ୍ରୀମୁଖ : ସର୍ବତନ୍ତ୍ର ସ୍ଵତନ୍ତ୍ର ବିଦ୍ଵାନ୍
ଶ୍ରୀମହାମେଧାନନ୍ଦନାଥ ସରସ୍ଵତୀ

ପ୍ରକାଶକ :

ବେଦାନ୍ତ ପ୍ରଚାର ପରିଷଦ୍

ଭୂମିକା, ପ୍ଲଟ ନମ୍ବର ୫୭୬, ପୋଷ୍ଟ : ଖଣ୍ଡଗିରି, ଭୁବନେଶ୍ଵର - ୩୦

ମୁଦ୍ରଣ : ପେଜ୍ ମେକର୍ କମ୍ପ୍ୟୁଟର ସର୍ଭିସେସ୍
୧୧୭, ବାପୁଜୀ ନଗର, ଭୁବନେଶ୍ଵର-୯

ପ୍ରଚ୍ଛଦପଟ : ଜୟା ମିଶ୍ର

ମୂଲ୍ୟ : ପଞ୍ଚତିରିଶ ଟଙ୍କା

**UPANISHAD GRANTHAMALA (Series) : Second**
**KENOPANISAD**
By
Satyananda Champatiray

SRIMUKHA (Introduction)
by
**Sarvatantra-Svatantra-Vidvan**
**HH Sri Mahamedhanandanath Saraswati**

Vedanta Prachaar Parisad
Bhoomika, Plot No. 576,
(P.O.) Khandagiri,
Bhubaneswar - 751 030

First Edition - 1996

Price : 35 /-

ମୋର ସାହିତ୍ୟ ସୃଷ୍ଟିକୁ ସରସ ସୁନ୍ଦର ଓ ସାର୍ଥକ
କରିବାରେ ଯିଏ ମତେ ଆବାଲ୍ୟରୁ ପ୍ରେରଣା
ଦେଇ ଆସିଛନ୍ତି ଓ ଜୀବନର ଏ ଉତ୍ତରାର୍ଦ୍ଧରେ
ଉପନିଷଦ୍‌ଗୁଡ଼ିକର ନିଗୂଢ଼ ତତ୍ତ୍ୱକୁ ପଢ଼ି
ଲୋକସାହିତ୍ୟ ମାଧ୍ୟମରେ ଓଡ଼ିଶାର
ପୁରପଲ୍ଲୀରେ ପହୁଞ୍ଚାଇବା ପାଇଁ
ଯିଏ ଆଶୀର୍ବାଦ କରିଛନ୍ତି
ସେହି ଅଗ୍ରଜୋପମ
ବିନୟୀ ବିଷ୍ଣୁଭକ୍ତ,
ସ୍ୱନାମଧନ୍ୟ
ସାହିତ୍ୟିକ
ଓ
ପ୍ରବୀଣ ସାମ୍ବାଦିକ ତଥା ଓଡ଼ିଶାର ଜନପ୍ରିୟ ମୁଖ୍ୟମନ୍ତ୍ରୀ
*ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ*
କର କମଳରେ ....

**ସତ୍ୟାନନ୍ଦ**

ବିଜୟା ଦଶମୀ, ୧୯୯୬

BBSR-STD-0674
Phone : 417387



1392/2395 SRIVIDYA
BHUBANESWAR - 751030



A Spiritual Philanthropic Research Journal on Society, Philosophy & Culture of
ଶ୍ରୀବିଦ୍ୟା ସଂସ୍କୃତି ସଂସ୍ଥାନ : श्रीविद्या - संस्कृति - संस्थानम्
SRIVIDYA SAMSKRUTI SAMSTHAN
(Regd. No. 1594-177 of 1987-88)
Hon. Chief Editor & Working President
*HH Mahamedhanandanath Saraswati*
सर्वतन्त्रस्वतन्त्रविद्वान् श्रीमहामेधानन्दनाथसरस्वती



# ଶ୍ରୀମୁଖ

ଯଚ୍ଛ୍ରୋତ୍ରାଦେରଧିଷ୍ଠାନଂ ଚକ୍ଷୁର୍ବାଗାଦ୍ୟଗୋଚରମ୍ ସ୍ୱତୋଽଧକ୍ଷଂ ନିତ୍ୟମୁକ୍ତ ବ୍ରହ୍ମୈବାହମଲକ୍ଷଣମ୍ ।
ଜ୍ଞାତାଜ୍ଞାତବିହୀନଂ ଯଦ୍ ବେଦ୍ୟାବେଦ୍ୟବିବର୍ଜିତମ୍ ସଚ୍ଚିଦାନନ୍ଦରୂପଂ ତଦ୍ ଉମୟା ବୁଧ୍ୟତେ ବୁଧଃ ।।

**'କେନ'** - ପଦ ଆଗରେ ପ୍ରୟୋଗ କରି ଆରମ୍ଭ ହୋଇଥିବାରୁ ଏହି 'ଉପନିଷଦ୍'ଟିର ନାମ 'କେନୋପନିଷଦ୍' । 'କେନ' ଅର୍ଥାତ୍ 'କାହାଦ୍ୱାରା' ଏ ଜୀବ ଜଗତ୍ - ସୃଷ୍ଟି ସମ୍ଭବ ହୋଇଛି - ଏହି ଆର୍ଯ୍ୟ ଦାର୍ଶନିକ ଜୀବନ ଜିଜ୍ଞାସାରୁ ସମୁଦ୍ଭୂତ ବ୍ରହ୍ମଜ୍ଞାନ ସଂବଳିତ ଗ୍ରନ୍ଥ 'କେନୋପନିଷଦ୍' ସାମବେଦୀୟ ତଲବକାର ବ୍ରାହ୍ମଣ'ର ନବମ ଅଧ୍ୟାୟ । ସର୍ବମୋଟ ମାତ୍ର ୩୫ଟି ମନ୍ତ୍ରାତ୍ମକ ଏହି କ୍ଷୁଦ୍ରକାୟ ଅଥଚ ମହଦାଶୟ ସଂପନ୍ନ ଉପନିଷଦ୍‌ଟି ଚାରି ଖଣ୍ଡରେ ବିଭକ୍ତ । ପ୍ରଥମ ଖଣ୍ଡର ୯ ଟି ମନ୍ତ୍ର ଓ ଦ୍ୱିତୀୟ ଖଣ୍ଡର ୫ଟି ମନ୍ତ୍ରକୁ ନେଇ ୧୪ ଟି ମନ୍ତ୍ର ସଂବଳିତ ପୂର୍ବାର୍ଦ୍ଧ ପଦ୍ୟାତ୍ମକ ଏବଂ ତୃତୀୟ ଖଣ୍ଡର ୧୨ଟି ମନ୍ତ୍ର ଓ ଚତୁର୍ଥ ଖଣ୍ଡର ୯ଟି ମନ୍ତ୍ରକୁ ନେଇ ୨୧ ମନ୍ତ୍ର ସଂବଳିତ ଉତ୍ତରାର୍ଦ୍ଧ ଗଦ୍ୟାତ୍ମକ । ଏହାର ପଦ୍ୟରୁ ସାମବେଦୀୟ ଗେୟାତ୍ମକତା ଓ ବ୍ରାହ୍ମଣ ଗ୍ରନ୍ଥର କଥନମୂଳକତା-ବିଚାର ପରିଲକ୍ଷିତ ହୁଏ । କେତେକଙ୍କ ମତରେ ଏହାର ଗଦ୍ୟାଂଶର ରଚନାକାଳ ପଦ୍ୟାଂଶ ଅପେକ୍ଷା ପ୍ରାଚୀନତର ଅଟେ । ଗୁରୁଶିଷ୍ୟ-ସଂବାଦ ଛଳରେ କଥିତ ତଥା ଏକ ରୂପକ ମାଧ୍ୟମରେ ପରିବେଷିତ ଏହି କ୍ଷୁଦ୍ରକାୟ ଉପନିଷଦ୍ ଉପରେ ଆଚାର୍ଯ୍ୟ ଶଙ୍କର ଗୋଟିଏ 'ପଦଭାଷ୍ୟ' ରଚନା କରିବା ପରେ ପୁଣି ଏହାର ତତ୍ତ୍ୱାର୍ଥ ପ୍ରତିପାଦନ ପାଇଁ ଆଉ ଏକ 'ବାକ୍ୟଭାଷ୍ୟ' ରଚନା କରିଥିବାରୁ ଏହାର ଉପଯୋଗିତା ମହତ୍ତ୍ୱପୂର୍ଣ୍ଣ ଅଟେ । ଅବଶ୍ୟ 'ବାକ୍ୟଭାଷ୍ୟଟି ଯେତେଦୂର ସମ୍ଭବ ଆଚାର୍ଯ୍ୟ ଶଙ୍କରଙ୍କ କୃତିର ଅନ୍ୟତମ ସମର୍ଥ ଭାଷ୍ୟକାର ଆନନ୍ଦଗିରିଙ୍କର ବୋଲି କେତେକ ମତ ଦିଅନ୍ତି।

ଆଚାର୍ଯ୍ୟ ରାମାନୁଜ ଓ ଆଚାର୍ଯ୍ୟ ମଧ୍ୱ ମଧ ଏହା ଉପରେ ସ୍ୱକୀୟ ଭାଷ୍ୟ ରଚନା କରିଯାଇଛନ୍ତି । ଫରାସି ସାହିତ୍ୟିକ ଭିକ୍ଟୋର ହ୍ୟୁଗୋ(Victor Hugo)ଙ୍କ ଉପରେ ଏହି ଉପନିଷଦ୍‌ଟିର ପ୍ରଭୂତ ପ୍ରଭାବ ପଡିଥିଲା ବୋଲି ପ୍ରସିଦ୍ଧ ସଂସ୍କୃତ ବିଦ୍ୱାନ୍ ଲୁଇସ୍ ରେନୁ (Louis Renu) ତାଙ୍କର "The influence of Indian thought on French Literature' ରେ ଉଲ୍ଲେଖ କରିଛନ୍ତି ।

**କାହାର ଇଚ୍ଛାରେ ସବୁ ପରିଚାଳିତ ?**

ଏହି ଉପନିଷଦ୍‌ରେ ପ୍ରଥମେ ବ୍ରହ୍ମ ସ୍ୱରୂପ ପ୍ରତିପାଦିତ ହୋଇଛି । ବ୍ରହ୍ମ ଆମ ଶ୍ରୋତ୍ରର ଶ୍ରୋତ୍ର, ମନର ମନ, ବାକ୍‌ର ବାକ୍, ପ୍ରାଣର ପ୍ରାଣ ଏବଂ ଚକ୍ଷୁର ଚକ୍ଷୁ ଅଟନ୍ତି । ବିଷୟଟିକୁ ସ୍ପଷ୍ଟ କରି କହିଲେ - ଏ ସଂସାରରେ ଅନେକ ଆଖି ଅଛି,ଯାହା ହୁଏତ ଦେଖିବାକୁ ନିଖୁଣ ମାତ୍ର ଦୃଷ୍ଟିଶକ୍ତି ରହିତ । ଦୃଷ୍ଟିଶକ୍ତି-ରହିତ ଆଖି ଯେପରି କିଛି ଦେଖି ପାରେ ନାହିଁ. ଶ୍ରବଣ ଶକ୍ତି ରହିତ ଶ୍ରୁତି, ମନନ ଶକ୍ତି ରହିତ ମନ, ବଚନ-ପ୍ରକାଶ-ଶକ୍ତି ରହିତ ବାକ୍ ଓ ଜୀବନୀ ଶକ୍ତି ରହିତ ପ୍ରାଣ ମଧ ସ୍ୱକର୍ମ ସାଧନରେ ସର୍ବଥା ଅସମର୍ଥ ହୁଅନ୍ତି ।

**ସବୁରି ମୂଳରେ ବ୍ରହ୍ମ ଶକ୍ତି :**

ଏଣୁ 'ମୁଁ ଦେଖୁଛି' କହିଲେ ମୋ ଆଖିରେ ଥିବା ବ୍ରହ୍ମାଭିନ୍ନ ଶକ୍ତି ହିଁ ଦେଖୁଛି ଏବଂ ମୁଁ ହେଉଛି ସେହି 'ଶକ୍ତି' ଠାରୁ ଅଭିନ୍ନ ନିତ୍ୟଶୁଦ୍ଧ-ବୁଦ୍ଧ-ମୁକ୍ତ ସ୍ୱଭାବ ଆତ୍ମା ବା ବ୍ରହ୍ମ -

'ଅହଂ ଦେବୀ ନ ଚାନ୍ୟୋଽସ୍ମି ବ୍ରହ୍ମୈବାହଂ ନ ଶୋକଭାକ୍ । ସଚ୍ଚିଦାନନ୍ଦରୂପୋଽହଂ ନିତ୍ୟମୁକ୍ତସ୍ୱଭାବବାନ୍ ॥

- ଏହି ବ୍ରହ୍ମ ଶକ୍ତିକୁ ଆମେ କୌଣସି ଇନ୍ଦ୍ରିୟ ବା ମନ ଦ୍ୱାରା ଜାଣି ପାରିବା ନାହିଁ । କାରଣ ବ୍ରହ୍ମ କେବେହେଲେ କୌଣସି ଇନ୍ଦ୍ରିୟଗମ୍ୟ ବିଷୟ ନୁହେଁ । ଏହା ଜ୍ଞେୟ ଓ ଅଜ୍ଞେୟ - ଉଭୟଠାରୁ ଭିନ୍ନ ଆଉ ଏକ ଅଲୌକିକ ଅସାଧାରଣ ତତ୍ତ୍ୱ । ବାକ୍ ପ୍ରଭୃତି କେବେ ହେଲେ ବ୍ରହ୍ମର ପ୍ରକାଶିକା ନୁହନ୍ତି, କାରଣ ବ୍ରହ୍ମ ଶକ୍ତି ହେଉଛି ବାକ୍ ପ୍ରଭୃତିର ପ୍ରକାଶିକା । ସେହି ବ୍ରହ୍ମଶକ୍ତି ଯୋଗୁଁ ହିଁ ଆମେ ଦେଖୁଛୁ, ଶୁଣୁଛୁ, କହୁଛୁ, ବିଚାର କରି ପାରୁଛୁ - ସବୁ କିଛି ସେ କଲେ ବା ତା ଯୋଗୁଁ ହେଲେ ବି ଆମେ କରୁଛୁ ବୋଲି ଅନୁଭବ କରୁଛୁ ବା ଗର୍ବ କରୁଛୁ । ଆମର ସବୁ କ୍ରିୟା - ତା'ରି ହିଁ ପ୍ରତିକ୍ରିୟା ବା ପରିପ୍ରକାଶ । ତେଣୁ ଆମରି ଭିତରେ ତଥା ଆମରି କ୍ରିୟାରେ ହିଁ ସେହି ଶକ୍ତିକୁ ଦେଖି ଅନୁଭବ କରିବାକୁ ହେବ । ବ୍ରହ୍ମ ବା ପରମାତ୍ମାକୁ ଆତ୍ମା ଛଡ଼ା ଆଉ କେହି ଜାଣିପାରିବ

ନାହିଁ କି ଆଉ କାହା ମାଧ୍ୟମରେ ଜାଣିହେବ ନାହିଁ । ଅତଏବ ବାକ୍,ମନ,ଚକ୍ଷୁ, ଶ୍ରୋତ୍ର ଓ ପ୍ରାଣ ଦ୍ୱାରା ଆମେ ଯା'ର ଉପାସନା କରୁଛୁ - ସେ ବ୍ରହ୍ମ ନୁହେଁ । ବ୍ରହ୍ମାନୁଭୂତି ଏକ ଆତ୍ମିକ ସତ୍ତାର ମନ୍ମୟ ଚିଦାନନ୍ଦାନୁଭୂତି । ଏହି ଅନୁଭୂତି ଲାଭର ମାର୍ଗ ଯେପରି ଗୁଣଗମ୍ୟ, ତଦନୁଭୂତ ତତ୍ତ୍ୱ ମଧ୍ୟ ସେପରି ସକୃପ ସମର୍ଥ ଗୁରୁଙ୍କ ସମର୍ଥନ ଆବଶ୍ୟକ କରେ ।

## ବ୍ରହ୍ମ ଦୁରଧିଗମ୍ୟ : ॐ

ଗୁରୁ ଶିଷ୍ୟଙ୍କୁ କହୁଛନ୍ତି - 'ତୁ ଯଦି ମନେ କରୁଛୁ ଯେ ତୁ ବ୍ରହ୍ମଙ୍କୁ ଜାଣିଛୁ, ତେବେ ତାହା ନିର୍ଗୁଣ ବ୍ରହ୍ମର ସଗୁଣ (ଦେବ) ରୂପ ଅଟେ ଏବଂ ତୋର ତାଦୃଶ ବ୍ରହ୍ମଜ୍ଞାନ ମୀମାଂସ୍ୟ ବା ବିଚାର୍ଯ୍ୟ ଅଟେ । ଏହା ଶୁଣି ଶିଷ୍ୟ କହିଲା, ମୋର ମନେ ହୁଏ - ଜାଣିଛି । ଭଲରୂପେ ଜାଣିଛି ନୁହେଁ, ନ କାଣିଛି କି ଜାଣିଛି ବି ନୁହେ' । ଏଣୁ ଏହା ଜ୍ଞାତ ଓ ଅଜ୍ଞାତର ଊର୍ଦ୍ଧ୍ୱରେ ଥାଉ ଏକ ବିଲକ୍ଷଣ ତତ୍ତ୍ୱ - ଆତ୍ମତତ୍ତ୍ୱ । ସବୁର ମୂଳରେ ଯେଉଁ ବ୍ରହ୍ମ, ତା'ର ପୁଣି ମୂଳ ଖୋଜି ବସିବା ଅମୂଳକ ଅଟେ । କାରଣ 'ଜନ୍ମାଦ୍ୟସ୍ୟ ଯତଃ,' 'ଅନନ୍ୟାଶ୍ରୟତ୍ୱ', ସୃଷ୍ଟି-ବିନାଶ-କାରଣ ତଥା ଅଜତ୍ୱ - ତା'ର ସ୍ୱଭାବ ବା ସ୍ୱତତ୍ତ୍ୱ ଅଟେ । ବାକ୍, ମନ ପ୍ରଭୃତି ଦ୍ୱାରା ଯା'ର ଉପାସନା କରାଯାଏ ସେ ବ୍ରହ୍ମ ନୁହେଁ - କାରଣ **'ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ'** - ସେ ସତତ ବିଜ୍ଞାତ ହେଲେ ବି ଅଜ୍ଞାତ । ଯେଉଁ ସାଧକ ପ୍ରତିବୋଧରେ ବିଦିତ ସେହି ମହାତତ୍ତ୍ୱର ଧ୍ୟାନ ପୂର୍ବକ ମନନ - ନିଦିଧ୍ୟାସନ କରେ, ସେ 'ଜୀବନ୍ମୁକ୍ତ' ହୋଇଯାଏ । ଯେ ଶକ୍ତି ଅଗ୍ନିଙ୍କ ମଧ୍ୟରେ ଦାହିକା ଶକ୍ତି ହୋଇ ଅଗ୍ନିଙ୍କୁ ଦେବତ୍ୱ ଦେଇଛି ଏବଂ ବାୟୁ ମଧ୍ୟରେ ବାତବିକ୍ଷୋଭକ ଶକ୍ତି ହୋଇ ବାୟୁଙ୍କୁ ଦେବତା କରିଛି । ସେହି ବ୍ରହ୍ମଶକ୍ତିଙ୍କୁ ଅଗ୍ନି, ବାୟୁ ପ୍ରଭୃତି ଦେବବୃନ୍ଦ ମଧ୍ୟ ଜାଣିପାରି ନାହାନ୍ତି । କେବଳ ଦେବରାଜ ଇନ୍ଦ୍ର ଜାଣିଲେ ଉମାଙ୍କ କୃପାରୁ । ଉମା ଗୁରୁ ହୋଇ ଉପଦେଶ ଦେଲେ ଇନ୍ଦ୍ରଙ୍କୁ । ସର୍ବଦେବ ଗନ୍ଧର୍ବ ବନ୍ଦନୀୟ ଉମା ହିଁ ବ୍ରହ୍ମଶକ୍ତି । ନିଗମ ବେଦର ପ୍ରତୀକ ଓଁ (ଅ+ଉ+ମ)କାର ନିର୍ଗୁଣ ବ୍ରହ୍ମର ଏବଂ ଶୈବାଗମର ଅମୃତବୀଜ **ବଂ** (ଉ+ଅ+ମ) ଗୁଣାଗୁଣ ବ୍ରହ୍ମର ଅମୂର୍ତ୍ତ ପ୍ରତୀକ **'ବିମର୍ଶ'** ନାଦ ହେଲାବେଳେ ଶାକ୍ତ ଚେତନାର ଉମା (ଉ+ମ+ଅ) ସଗୁଣ ବ୍ରହ୍ମର ମୂର୍ତ୍ତ ପ୍ରତୀକ **'ପ୍ରକାଶ'** ବିନ୍ଦୁ ଅଟନ୍ତି ।

## ପ୍ରତିବୋଧରେ ସେ ଜ୍ଞାନ ସ୍ୱରୂପ :

ଈଶୋପନିଷଦ୍‌ରେ ବହିର୍ମୁଖ ବୃତ୍ତିସଂପନ୍ନ ଜିଜ୍ଞାସୁ ସାଧକ ମାନଙ୍କ ପାଇଁ ସାଧନ ନିର୍ଦ୍ଦିଷ୍ଟ ହୋଇଛି । କେନୋପନିଷଦ୍‌ରେ ସମଗ୍ର ବିଶ୍ୱର ନିୟମ-କାରିଣୀ ଅନନ୍ତ-ଅଜ୍ଞେୟ-ଶକ୍ତିକୁ ବ୍ରହ୍ମ କୁହାଯାଇଛି । ସେ ଜ୍ଞାନସ୍ୱରୂପ । ପ୍ରତ୍ୟେକ ବୋଧ ବା ଚିଦଂଶରେ ତା'ର ଭାବସତ୍ତା ବିଦ୍ୟମାନ । ଧ୍ୟାନ ପୂର୍ବକ ମନନ-ନିଦିଧ୍ୟାସନ କଲେ ସେହି ଦିବ୍ୟଜ୍ଞାନ ନିଜ

ବୁଦ୍ଧିରେ ଆସିଲେ ଅନୁଭବରେ ଅମୃତାସ୍ୱାଦନ ହେବ ଏବଂ ସେହି ଦିବ୍ୟ-ଆତ୍ମଜ୍ଞାନ ଦ୍ୱାରା ହିଁ 'ମୋକ୍ଷ' ସମ୍ଭବ ହେବ ।

ପ୍ରତିବୋଧବିଦିତଂ ମତମମୃତତ୍ୱଂ ହି ବିନ୍ଦତେ । ଆତ୍ମନା ବିନ୍ଦତେ ବୀର୍ଯ୍ୟଂ ବିଦ୍ୟୟା ବିନ୍ଦତେଽମୃତମ୍ ॥ (କେନ ୨/୪)

ଯେପରି ପ୍ରତିବିମ୍ବରୁ ବିମ୍ବର ଜ୍ଞାନ ହୁଏ, ଠିକ୍ ସେହିପରି ସ୍ୱ-ସତ୍ତାର ଚିଦ୍-ଜ୍ଞାନରୁ ବା ଦେଖିବା-ଶୁଣିବା ପରି ଇନ୍ଦ୍ରିୟ ଲବ୍ଧ ଜ୍ଞାନରୂପ ପ୍ରତିବୋଧରୁ ଆତ୍ମବୋଧର ପ୍ରତ୍ୟାଭାସ ହୋଇଥାଏ । ବ୍ରହ୍ମ ପ୍ରତିବିମ୍ବ ପରି ଯାହା - ତାର ଜ୍ଞାନ ହୁଏ ସତ କିନ୍ତୁ ତାହା ବୋଧଗମ୍ୟ ହୁଏ ନାହିଁ । କାରଣ ତଥାପି ଅବୋଧ ରହିଯାଏ, ପରାବିଦ୍ୟାର ଆଶ୍ରୟ ନେଇ ମନନ-ନିଦିଧ୍ୟାସନ ଦ୍ୱାରା ତା'ର ଚିନ୍ତନ କଲେ ଜ୍ଞାନଲାଭ ପୂରଃସର ମୋକ୍ଷଲାଭ ହୁଏ । ଏହି ଆତ୍ମଚିନ୍ତନ ଦ୍ୱାରା ଏକ ଦିବ୍ୟାନୁଭୂତି ହୁଏ ଓ ତହିଁରୁ ଏକପ୍ରକାର ଉତ୍ସାହ ଓ ଆତ୍ମପ୍ରତ୍ୟୟ ତଥା ଦିବ୍ୟବଳ ମିଳିଥାଏ । ମଣିଷ ଜ୍ଞାନଲାଭ କଲେ ସତ୍ୟାସତ୍ୟ ବୁଝିପାରେ ଏବଂ ସଂସାର ବନ୍ଧନରୁ ମୁକ୍ତ ହୋଇଯାଏ, ମୋକ୍ଷ ଲାଭ କରେ । ସେ ଅମୃତର ଆସ୍ୱାଦନ କରେ, ଅମର ହୋଇଯାଏ । ଏହା ଏ ଜନ୍ମରେ ନ ହେଲେ -ଏହି ଜନ୍ମଟା ନିରର୍ଥକ ହୋଇଯାଏ ।

**ଜଣାଙ୍କ ଅଜଣା, ଅଜଣାଙ୍କ ଜଣା :**

ଏ କଥାଟା ଅନେକ ତଥାକଥିତ ଜ୍ଞାନୀ ଲୋକ ଜାଣି ପାରନ୍ତି ନାହିଁ, ଅଥଚ ଥରେ ବୋଧରେ ଆସିଗଲେ କେତେକ ସାଧାରଣ ଅଜ୍ଞାନ ମଣିଷ ମଧ୍ୟ ଜାଣି ଯାଆନ୍ତି - **'ଅବିଜ୍ଞାତଂ ବିଜାନତାଂ, ବିଜ୍ଞାତମବିଜାନତାମ୍'** । କଥାଟାକୁ ଗୋଟିଏ ଦୃଷ୍ଟାନ୍ତ ଦ୍ୱାରା ସ୍ପଷ୍ଟ କରାଯାଇପାରେ । ଆକାଶର ରଙ୍ଗ ନାହିଁ କି ରୂପ ନାହିଁ କିନ୍ତୁ ନୀଳ ଦେଖାଯାଏ । ଆକାଶକୁ ଦେଖିବା ଶକ୍ତି ଆମ ଆଖିର ନାହିଁ, ତଥାପି ଦୃଶ୍ୟମାନ ନୀଳିମାରୁ ଆମର ଆକାଶ ଜ୍ଞାନ ହୋଇଥାଏ । କିନ୍ତୁ ଯେ ଆକାଶର ଶୂନ୍ୟତା(void)କୁ ଅନୁଭବ କରିବ, ତା'ର ଆକାଶଜ୍ଞାନ ଶୂନ୍ୟ (devoid)ହିଁ ହୋଇଯିବ - ସେ କିଛି ଜାଣି ପାରିବ ନାହିଁ । କିନ୍ତୁ ପ୍ରକାଶ୍ୟ ପଦାର୍ଥକୁ ଦେଖୁଥିବା ଲୋକର ପ୍ରକାଶ ସମ୍ବନ୍ଧରେ ଜ୍ଞାନ ହୁଏ, ଯଦ୍ୟପି ପ୍ରକାଶର ବାସ୍ତବ ସ୍ୱରୂପକୁ ସେ ଜାଣି ନଥାଏ ଏବଂ ପ୍ରକାଶକୁ ପ୍ରକାଶ୍ୟ ବସ୍ତୁଠାରୁ ପୃଥକ୍ ଦେଖିବାକୁ ଚାହିଁଲେ ମଧ୍ୟ ପ୍ରକାଶର ରୂପକୁ ଦେଖିପାରେ ନାହିଁ । ସେହିପରି ଆମ ଚେତନାରେ ବ୍ରହ୍ମଙ୍କ ଚିତ୍‌ଶକ୍ତି ସର୍ବଦା ଅନୁଭୂତ ହେଲେ ମଧ୍ୟ, ଆମ ଚେତନାରୁ ପୃଥକ୍ କରି ତାଙ୍କୁ ଆମେ ଜାଣି ପାରିବା ନାହିଁ କି ଅଲଗା ଦେଖି ପାରିବା ନାହିଁ । ଯେଉଁ ଯୋଗୀ ସାଧକ ସମାଧିରେ ତାହା ଅନୁଭବ କରି ପରେ ଜାଗ୍ରତ୍-**ଅବସ୍ଥାରେ** ମଧ୍ୟ ସେହି ମଧୁର

ଅନୁଭୂତିର ସ୍ମୃତିକୁ ଧାରଣ କରି ତତ୍-ସ୍ୱରୂପ ଜ୍ଞାନ ବିବେକ କରିବାରେ ସମର୍ଥ ହୁଅନ୍ତି, ସେ ହିଁ **'ବିଦ୍ୟୟା ବିନ୍ଦତେଽମୃତମ୍'** - ବିଦ୍ୟାଦ୍ୱାରା ଅମୃତରସାସ୍ୱାଦନରେ ସମର୍ଥ ହୁଅନ୍ତି । ପ୍ରତ୍ୟେକ ମନୁଷ୍ୟ ମଧ୍ୟରେ ଥିବା ଚେତନା ବା ଚିତ୍ ପ୍ରକାଶ ହିଁ ବ୍ରହ୍ମଙ୍କ ପ୍ରକାଶ । ବ୍ରହ୍ମ ଓ ମଣିଷ ମଧ୍ୟରେ ଥିବା ଏହି ଚିତ୍ ସତ୍ତାରେ ଐକାନ୍ତିକ ସାରୂପ୍ୟ ରହିଛି । ଏକ ପରମାତ୍ମା ଶକ୍ତିର ପ୍ରକାଶ ହିଁ ଅନେକ ଜୀବ । ଅବିଦ୍ୟା ମୋହଗ୍ରସ୍ତ ହୋଇ ଜୀବ ନିଜ ବ୍ରହ୍ମ-ସ୍ୱରୂପକୁ ଉପଲବ୍ଧି କରିପାରେ ନାହିଁ । ଦୁଃଖ ଦ୍ୱନ୍ଦ୍ୱାତ୍ମକ ପ୍ରାକୃତ ଜୀବନର ଊର୍ଦ୍ଧ୍ୱକୁ ଉଠି ଅମୃତମୟ ଓ ଆନନ୍ଦମୟ ଆତ୍ମସତ୍ତାକୁ ଅନୁଭବ କରିପାରିଲେ **'ଆତ୍ମନା ବିନ୍ଦତେ ବୀର୍ଯ୍ୟଂ'** ସାର୍ଥକ ହେବ ଏବଂ ସେ ମୁକ୍ତ ସ୍ୱାଧୀନ ଜୀବନ ଯାପନ କରି ଆତ୍ମଶକ୍ତିରେ ବୀର୍ଯ୍ୟବାନ୍ ହୋଇପାରିବ । ଏହି ଆତ୍ମଶକ୍ତି ଲାଭ କରିବା ସକାଶେ ଆଧ୍ୟାତ୍ମିକ ସାଧନ ସମର କରିବାକୁ ହେବ ଏବଂ ନିଜର ନିତ୍ୟସତ୍ୟ ସଚ୍ଚିଦାନନ୍ଦ ସ୍ୱରୂପକୁ ଉପଲବ୍ଧି କରି ଏହି ଜନ୍ମକୁ ସାର୍ଥକ କରିବାକୁ ହେବ ।

## ବ୍ରହ୍ମ ଶକ୍ତି ହିଁ ସବୁକିଛି :

ଏପରି ଏକ ସାଧନସମରର ହିଁ ସଂକେତ ଦିଏ-କେନୋପନିଷଦ୍‌ର ରୂପକ ଛଳରେ ପ୍ରକାଶିତ ଆଖ୍ୟାନଟି । ଦେବାସୁର ସଂଗ୍ରାମରେ ବିଜୟୀ ଦେବତାମାନେ ଅହଂକାର ବଶତଃ ନିଜ ମହିମାରେ ଗର୍ବିତ ହୋଇଛନ୍ତି । ସେମାନଙ୍କ ଗର୍ବକୁ ଖର୍ବ କରିବାପାଇଁ ବ୍ରହ୍ମ ଏକ 'ଯକ୍ଷ' ରୂପରେ ନିଜକୁ ପ୍ରକାଶ କରିଛନ୍ତି । ତାଙ୍କୁ ଜାଣିବା ପାଇଁ ଜାତବେଦ ଅଗ୍ନି ଯାଇ ନିଜ ଶକ୍ତିରେ ସବୁ ଜାଳି ସେ ଭସ୍ମ କରିଦେଇ ପାରିବେ ବୋଲି ଦମ୍ଭରେ ନିଜର ପରିଚୟ ଦେଇଛନ୍ତି । ଅଥଚ ଯକ୍ଷ ତାଙ୍କ ଆଗରେ ଶୁଖିଲା ଘାସଟିଏ ରଖି ଜାଳିବାକୁ କହିବାରୁ ଅଗ୍ନି ଜାଳି ନ ପାରି ଫେରି ଆସିଛନ୍ତି । ତା ପରେ ମାତରିଶ୍ୱା ବାୟୁ ନିଜ ଶକ୍ତିରେ ସବୁ ଉଡ଼ାଇ ନେଇପାରିବେ ବୋଲି ଦର୍ପୋକ୍ତି କରି ଘାସ କୁଟା ଖଣ୍ଡିକୁ ବି ଉଡ଼ାଇବାରେ ଅସମର୍ଥ ହୋଇଛନ୍ତି । ଶେଷରେ 'କିଏ ସେହି ଯକ୍ଷ' ଜାଣିବା ପାଇଁ ଦେବତାମାନଙ୍କ ରାଜା ଇନ୍ଦ୍ର ଯିବାରୁ ଯକ୍ଷ ବିଦ୍ୟୁତ୍‌ର ଝଲକ ପରି ଉଭେଇ ଯାଇଛନ୍ତି । ତା'ପରେ ସେଠାରେ ବ୍ରହ୍ମ ଶକ୍ତି ହୈମବତୀ ଉମା ଆବିର୍ଭାବ ହୋଇ ବ୍ରହ୍ମ ହିଁ ଯକ୍ଷରୂପ ଧାରଣ କରିଥିଲେ ବୋଲି କହି ଇନ୍ଦ୍ରଙ୍କୁ 'ବ୍ରହ୍ମତତ୍ତ୍ୱ' ଉପଦେଶ ଦେଇଛନ୍ତି । ଇନ୍ଦ୍ର ପ୍ରଥମେ ବ୍ରହ୍ମଜ୍ଞାନ ଲାଭ କରିଥିବାରୁ ଦେବତାମାନଙ୍କ ମଧ୍ୟରେ ପ୍ରଧାନ ବା ଦେବରାଜ ହୋଇଛନ୍ତି ଏବଂ ଯକ୍ଷଙ୍କୁ ନ ଜାଣି ପାରିଲେ ବି ଦର୍ଶନ କରିଥିବାରୁ ଅଗ୍ନି ଓ ବାୟୁ ମଧ୍ୟ ଦେବତାମାନଙ୍କ ମଧ୍ୟରେ ପ୍ରାଧାନ୍ୟ ଲାଭ କରିଛନ୍ତି ।

**ହୈମବତୀ ଉମା :**

ମଣିଷ ମନରେ ଦେବାସୁର ସଂଗ୍ରାମ ନିତ୍ୟ ପ୍ରତ୍ୟହ ଚାଲିଛି । କେତେବେଳେ ଆସୁରିକ ପ୍ରବୃତ୍ତିର ପ୍ରାଧାନ୍ୟ ବଶତଃ ମଣିଷ କୁକର୍ମ କରି ବସୁଛି ତ କେତେବେଳେ ଦିବ୍ୟସଦ୍‌ବୁଦ୍ଧିର ଉଦ୍ରେକ ଯୋଗୁଁ କୁକର୍ମରୁ ନିବୃତ୍ତ ହୋଇ ସତ୍‌କର୍ମରେ ପ୍ରବୃତ୍ତ ହେଉଛି । ସେ ଶକ୍ତି ସର୍ବଦା ଦିବ୍ୟ, ଭବ୍ୟ ଓ ମହନୀୟ ଅଟେ । ଆମ ଦେହରେ ଥିବା ଅଗ୍ନି ଆମ ଆଖିରେ ଜ୍ୟୋତି ହୋଇ ଆମକୁ ପଥ ପ୍ରଦର୍ଶନ କରୁଛି ଏବଂ ଆମ ଜଠରରେ ରସ-ପରିପାକ-କ୍ରିୟା ଦ୍ୱାରା ଆମ ରକ୍ତକୁ ସତେଜ କରି ଆମ ମଧ୍ୟରେ ଜୀବନୀ ଶକ୍ତିର ସଂଚାର କରି ଆମକୁ ଶିବତ୍ୱ ଦେଇ 'ଜୀବ' ରୂପରେ ରଖିଛି । ସେ ଅଗ୍ନିର ଉଷ୍ଣତା ବିନା ଥଣ୍ଡା ଶରୀରଟା 'ଶବ' ହୋଇଯିବ, ତେଣୁ ଅଗ୍ନିକୁ 'ଜାତବେଦ' କୁହାଯାଏ । ପ୍ରତ୍ୟେକ ଜାତ ଜୀବକୁ ସେ ଜାଣେ । ତେଣୁ ଯକ୍ଷଙ୍କୁ ଜାଣିବା ପାଇଁ ସେ ଅଗ୍ରଣୀ ହୋଇ ଆଗ ଗଲେ । ତେଣୁ 'ଅଗ୍ନିଃ କସ୍ମାତ୍ ? ଅଗ୍ରଣୀ ର୍ଭବତି' - ଅଗ୍ରଣୀରୁ ଅଗ୍ନି ଶବ୍ଦ ଉତ୍ପନ୍ନ ବୋଲି 'ନିରୁକ୍ତ'କାର ଯାସ୍କ କହିଛନ୍ତି ।'ଯକ୍ଷ' ଧାତୁର ଅର୍ଥ ପୂଜ୍ୟ । ତେଣୁ ପୂଜନୀୟ ବା ମହନୀୟ ବ୍ରହ୍ମତେଜ ଆଗରେ ଅଗ୍ନି ନିଷ୍ପ୍ରଭ ହୋଇଯାଇଛନ୍ତି - କୁଟାଖଣ୍ଡେ ମଧ୍ୟ ପୋଡ଼ିବାରେ ସମର୍ଥ ହୋଇ ନାହାନ୍ତି । ବାୟୁ (ବାତି-ପ୍ରବହତି) ଅର୍ଥାତ୍ ପ୍ରବାହିତ ହେବା ଯା'ର ଧର୍ମ ଏବଂ ଯେ (ମାତରି=) ଅନ୍ତରିକ୍ଷରେ (ଶ୍ୱୟତେ=) ଗତି କରୁଥିବାରୁ ମାତରିଶ୍ୱା ନାମରେ ପରିଚିତ, ସେ ମଧ୍ୟ କୁଟାଖଣ୍ଡକୁ ଉଡାଇ ପାରିନାହାନ୍ତି । କାରଣ ସବୁଶକ୍ତି ସେ ମହାଶକ୍ତିର ଅଂଶ ମାତ୍ର । ସେ ଅସାମାନ୍ୟ ବ୍ରହ୍ମ ଶକ୍ତି ଆଗରେ ସବୁ ତୃଣ, ସବୁ ସାମାନ୍ୟ, ସବୁତୁଚ୍ଛ । ତାକୁ ଭିତରେ ଦେଖି ହେବ ଓ ଅନୁଭବ କରି ହେବ କିନ୍ତୁ ଧରି ରଖି ହେବ ନାହିଁ । ସେ ହେମବର୍ଣ୍ଣା, କ୍ଷଣପ୍ରଭା । ଇନ୍ଦ୍ର (ଇଦି - ଐଶ୍ୱର୍ଯ୍ୟେ)ଙ୍କର ଐଶ୍ୱର୍ଯ୍ୟ ମଧ୍ୟ ତାକୁ ଧରି ରଖିପାରିନାହିଁ କି ସେ ଧରା ଦେଇ ନାହାନ୍ତି । କାରଣ ସେ ଜ୍ଞାନ ସ୍ୱରୂପ । ଜ୍ଞାନ କେବେ ଐଶ୍ୱର୍ଯ୍ୟକୁ ପ୍ରାଧାନ୍ୟ ଦିଏ ନାହିଁ । ଜିଜ୍ଞାସା ଥିବାରୁ ଇନ୍ଦ୍ର ତାଙ୍କର ଦର୍ଶନ ପାଇଛନ୍ତି । ବ୍ରାହ୍ମୀ ଶକ୍ତି ଉମା ରୂପରେ ଇନ୍ଦ୍ରଙ୍କୁ ବ୍ରହ୍ମବିଦ୍ୟା ଉପଦେଶ ଦେଇଛନ୍ତି । ଏଥିରେ ଅଧ୍ୟାତ୍ମ-ରହସ୍ୟର ଯଥାର୍ଥ-ଅବବୋଧରେ ଗୁରୁଙ୍କ ଗୌରବ ଏବଂ ଶିଷ୍ୟର ଶାସନାଧୀନତ୍ୱ ସ୍ୱୀକୃତ ହୋଇଛି । ଉମା ହୈମବତୀ ବା ହିମ ଶୀତଳ ସୁପ୍ତ କୁଣ୍ଡଳିନୀ ସାଧକର ସୁଷୁମ୍ନାସ୍ଥିତ ଷଟ୍‌ଚକ୍ର-ଭେଦ-କ୍ରମରେ ଆଜ୍ଞାଚକ୍ରରେ ଉପଦେଶ ଦେଇ ସହସ୍ରାରରେ ଦଗ୍ଧସୁବର୍ଣ୍ଣ ବା ହେମ ବିଭାରେ ଦ୍ୟୋତିତ ବା ପ୍ରକାଶ ପାଇଛନ୍ତି । ସେହି ବ୍ରହ୍ମ ଜ୍ୟୋତିଃ ହିଁ 'ତଦ୍‌ବନ' ( ବନ ସଂଭକ୍ତୌ ଧାତୁରୁ) ବା ସତତ ଭକ୍ତିଗମ୍ୟ ଓ ନିତ୍ୟ ଧ୍ୟେୟ ଅଟେ ଏବଂ ତାର ଭୂମାନନ୍ଦ (Transcendent Delight) ଏକନିଷ୍ଠ ସାଧକର 'ବିମର୍ଶ'-ଗମ୍ୟ ଅଟେ ।

ଜୀବନକୁ ନିତ୍ୟ ମୁକ୍ତ କରି ଜୀବକୁ ଶିବତ୍ୱ ଦେଇ ଏକ ଦିବ୍ୟ ଭାବରେ ପରମାନନ୍ଦ ଲାଭ କରିବାର କୌଶଳ ବେଦାନ୍ତ ଶିଖାଇଥାଏ । ଏହାର ମୂଳ ଉପନିଷଦ୍‌ର ଚିନ୍ତାଧାରାରେ ନିହିତ ଥିବାରୁ 'ବେଦାନ୍ତୋ ନାମ ଉପନିଷଦ୍‌ପ୍ରମାଣଂ' ବୋଲି କୁହାଯାଇଛି । ବେଦାନ୍ତର ଜୀବନ ଧାରାରେ ଏକ ନିତ୍ୟ ଶୁଦ୍ଧ ମୁକ୍ତ ଜୀବନରେ ସଚ୍ଚିଦାନନ୍ଦ ଉପଲବ୍ଧି କରିବା ପାଇଁ ପ୍ରତିଶ୍ରୁତି ରହିଛି । 'ଅହଂ ବ୍ରହ୍ମାସ୍ମି', 'ତତ୍ତ୍ୱମସି', 'ଅୟମାତ୍ମା ବ୍ରହ୍ମ', 'ପ୍ରଜ୍ଞାନଂ ବ୍ରହ୍ମ' ପ୍ରଭୃତି ମହାବାକ୍ୟରୁ ବେଦାନ୍ତର ବ୍ରହ୍ମଜ୍ଞାନ ମିଳିଥାଏ । 'ବ୍ରହ୍ମ' ଶବ୍ଦଟି 'ବୃଂହ-ବର୍ଦ୍ଧନେ' ଧାତୁରୁ ନିଷ୍ପନ୍ନ । ତେଣୁ କ୍ରମବର୍ଦ୍ଧନଶୀଳ ଏକ ନିତ୍ୟ ସତ୍ୟ ସର୍ବବ୍ୟାପକ ଚିତ୍ ଶକ୍ତି ହିଁ ବ୍ରହ୍ମ ଅଟେ । ଏହି ବ୍ରହ୍ମ ଚେତନାର ସାମାନ୍ୟ ସ୍ପର୍ଶ ହିଁ ଆମର 'ଅହଂ'ଏବଂ ଏହାକୁ ନେଇ ଆମର ମନ ଚିନ୍ତା କରେ ଓ ଶରୀର କାର୍ଯ୍ୟ କରେ ତଥା ଶିବ ବା ମଙ୍ଗଳାୟତନ ହୁଏ' - ଶିବଃ ଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁମ୍' । ସେହି ଚିତ୍‌ଶକ୍ତିରୁ ସଂଯୋଗ ଛିନ୍ନ ହେଲେ ସବୁ ଥଣ୍ଡା, ସବୁ ଜଡ଼,ସବୁ ସ୍ପନ୍ଦନହୀନ - ଶବ ହୋଇଯାଏ 'ନଚେଦ୍ ଏବଂ ଦେବୋ ନ ଖଳୁ କୁଶଳଃ ସ୍ପନ୍ଦିତୁମପି' । ଠିକ୍ ବିଦ୍ୟୁତ୍ ଶକ୍ତିର ଉତ୍ପାଦନ କେନ୍ଦ୍ର ହୀରାକୁଦଠାରୁ ସଂଯୋଗ ଛିନ୍ନ ହୋଇଗଲେ ସବୁ ସହର ସହ ଭୁବନେଶ୍ୱର ରାଜଧାନୀ ଯେମିତି ଅନ୍ଧାର ହୋଇଯାଏ । ଏ ବିଶ୍ୱ ଜଗତ୍‌ରେ ମୂଳ ବ୍ରହ୍ମର ସଚ୍ଚିଦାନନ୍ଦମୟତ୍ୱ ଅନୁଭବ କରି ବିଶ୍ୱର ସବୁ କିଛି ସହ ନିଜର ଏକତ୍ୱ ଭାବନା ବେଦାନ୍ତ ଚେତନାର ମହନୀୟ ଅବଦାନ ।

## ବ୍ରହ୍ମଙ୍କ ସ୍ୱରୂପ :

ବ୍ରହ୍ମଙ୍କ ସ୍ୱରୂପ ନିର୍ଦ୍ଧାରଣ ହେଉଛି ଦର୍ଶନ ଶାସ୍ତ୍ରର ଚରମ ପରମ ସମସ୍ୟା । ଆମେ ଜାଣୁ ' ବ୍ରହ୍ମ ଏକମେବାଦ୍ୱିତୀୟମ୍-କେବଳ ଏକ ନୁହନ୍ତି, ସେ ଅଦ୍ୱିତୀୟ ମଧ୍ୟ । ସେ ହେଉଛନ୍ତି ପରମ ବା ପରତତ୍ତ୍ୱ (Absolute ) -

> **ଯସ୍ମାତ୍** ପରଂ ନାପରମ୍ ଅସ୍ତି କିଞ୍ଚିତ୍ - (ଶ୍ୱେତ ୩/୯)
> ଯାହାଙ୍କ ଅପେକ୍ଷା ପର (=ଶ୍ରେଷ୍ଠ) ବା ପରତର (ଅପଚ-) ଆଉ କିଛି ନାହିଁ ।
> **ମତ୍ତଃ** ପରତରଂ ନାନ୍ୟତ୍ କିଞ୍ଚିଦସ୍ତି ଧନଞ୍ଜୟ - (ଗୀତା ୭/୭)

ଏହି ବ୍ରହ୍ମଙ୍କୁ ପ୍ରତ୍ୟକ୍ଷ ଦେଖି ହେବନାହିଁ । ଅନୁମାନ କରିହେବ ସତ କିନ୍ତୁ ସେ ଅନୁମାନ ତାଙ୍କର ସ୍ୱରୂପ ଜ୍ଞାନରେ ପର୍ଯ୍ୟାପ୍ତ ହେବ ନାହିଁ । ଏହାକୁ କେବଳ ସତ୍ୟଦ୍ରଷ୍ଟା ଆର୍ଯ୍ୟ ଋଷିମାନଙ୍କର 'ବେଦ' ବାଣୀରୁ ହିଁ ଜାଣି ହେବ । କାରଣ ଏ ବିଷୟରେ -

> '**ଋଷିଭି** ର୍ବହୁଧା ଗୀତଂ ଛନ୍ଦୋଭିର୍ବିବିଧୈଃ ପୃଥକ୍ - (ଗୀତା ୧୩/୪)
> - ଋଷିମାନେ ବିବିଧ ଛନ୍ଦରେ ବହୁତ ବର୍ଣ୍ଣନା କରିଯାଇଛନ୍ତି ।

ତେଣୁ ବେଦଶାସ୍ତ୍ରର ଶାଶ୍ୱତ ବାଣୀରୁ ହିଁ ନିତ୍ୟ ବ୍ରହ୍ମଙ୍କ ସ୍ୱରୂପ ଜାଣି ହେବ । ବେଦ ହିଁ ବ୍ରହ୍ମ ବିଷୟରେ ପ୍ରମାଣ-ଶାସ୍ତ୍ର । ଏଣୁ ମହର୍ଷି ବେଦବ୍ୟାସ କହିଛନ୍ତି -

**ଶାସ୍ତ୍ରଯୋନିତ୍ୱାତ୍** - ବ୍ରହ୍ମସୂତ୍ର (୧/୧/୩)

- ଏହାର ଭାଷ୍ୟ କରି ଆଚାର୍ଯ୍ୟ ଶଙ୍କର ଲେଖିଲେ - **'ଋଗ୍‌ବେଦାଦିଶାସ୍ତ୍ରଂ ଯୋନିଃ କାରଣଂ ପ୍ରମାଣମ୍ ଅସ୍ୟ ବ୍ରହ୍ମଣୋ ଯଥାବତ୍ ସ୍ୱରୂପାଧିଗମେ'** - ବ୍ରହ୍ମଙ୍କର ସ୍ୱରୂପ ଜାଣିବା ବିଷୟରେ ଋଗ୍‌ବେଦାଦି ଶାସ୍ତ୍ର ହିଁ ହେଉଛନ୍ତି ଯୋନି ଅର୍ଥାତ୍ ମୂଳ କାରଣ ବା ପ୍ରମାଣ ।

ଏହି ବେଦଜ୍ଞାନର ଚରମ ନିଷ୍କର୍ଷ ହେଉଛି ' ବେଦାନ୍ତ' । **'ବେଦାନ୍ତୋ ନାମ ଉପନିଷତ୍‌ପ୍ରମାଣମ୍** (ବେଦାନ୍ତସାର)' - ବେଦାନ୍ତ କହିଲେ ଉପନିଷତ୍ ହିଁ ପ୍ରମାଣ ଶାସ୍ତ୍ର । ଏ ବିଷୟରେ ଗଭୀର ଅନୁଧ୍ୟାନ କଲେ ଜଣାଯାଏ ଯେ -

**'ସନ୍ତି ଉଭୟଲିଙ୍ଗାଃ ଶ୍ରୁତୟୋ ବ୍ରହ୍ମ-ବିଷୟାଃ ସବିଶେଷଲିଙ୍ଗାଃ ନିର୍ବିଶେଷଲିଙ୍ଗାଶ୍ଚ'** - (ବ୍ରହ୍ମସୂତ୍ର ୩/୨/୧୧) ଶଙ୍କରଭାଷ୍ୟ ।

ଅର୍ଥାତ୍ - ଉପନିଷଦ୍‌ରେ ବ୍ରହ୍ମ ବିଷୟରେ ଦ୍ୱିବିଧ ଶ୍ରୁତି ଦୃଷ୍ଟ ହୁଏ । ନିର୍ବିଶେଷ ଲିଙ୍ଗ (ବା ନିର୍ଗୁଣ) ଓ ସବିଶେଷ ଲିଙ୍ଗ (ବା ସଗୁଣ) ।

**ବ୍ରହ୍ମଃ ନିର୍ଗୁଣ -**

ନିର୍ବିଶେଷ ଲିଙ୍ଗ ଯଥା - 'ନିଷ୍କଳଂ, ନିଷ୍କ୍ରିୟଂ, ଶାନ୍ତଂ ନିରବଦ୍ୟଂ ନିରଞ୍ଜନମ୍' - (ଶ୍ୱେତ ୬/୧୯)

ଏହି ପ୍ରକାରେ ବ୍ରହ୍ମ ହେଉଛନ୍ତି - ନିଷ୍କଳ, ନିଶ୍ଚଳ, ନିଷ୍କ୍ରିୟ, ନିଃକ୍ଷୋଭ, ନିରଞ୍ଜନ ।

ସେହି ବ୍ରହ୍ମ ଆହୁରି ମଧ - 'ଅଶବ୍ଦମ୍, ଅସ୍ପର୍ଶମ୍, ଅରୂପମ୍, ଅବ୍ୟୟଂ ତଥାରସଂ ନିତ୍ୟମ୍ - ଅଗନ୍ଧବତ୍ ଚ ଯତ୍, ଅନାଦ୍ୟନନ୍ତମ୍ - (କଠ ୩/୧୫) ।

ଅସ୍ଥୂଳମ୍, ଅନଣୁ, ଅହ୍ରସ୍ୱମ୍, ଅଦୀର୍ଘମ୍ ଅଲୋହିତମ୍, ଅସ୍ନେହମ୍, ଅଚ୍ଛାୟମ୍, ଅତମଃ, ଅବାୟୁ, ଅନାକାଶମ୍, ଅସଙ୍ଗମ୍, ଅରସମ୍, ଅଗନ୍ଧମ୍, ଅଚକ୍ଷୁଷ୍କମ୍ , ଅଶ୍ରୋତ୍ରମ୍, ଅବାକ୍, ଅମନଃ, ଅତେଜସ୍କମ୍, ଅପ୍ରାଣମ୍, ଅମୁଖମ୍, ଅମାତ୍ରମ୍, ଅନନ୍ତରମ୍, ଅବାହ୍ୟମ୍ - (ବୃହଦାରଣ୍ୟକ ୩/୮/୮) -

ଅର୍ଥାତ୍, ସେ ଶବ୍ଦ ନୁହେଁ, ସ୍ପର୍ଶ ନୁହେଁ, ରୂପ ନୁହେଁ, ଅବ୍ୟୟ-ଅକ୍ଷୟ, ରସ ନୁହେଁ, ନିତ୍ୟ ଶାଶ୍ୱତ, ଗନ୍ଧଯୁକ୍ତ ନୁହେଁ, ଅନାଦି ଅନନ୍ତ । ସେ ସ୍ଥୂଳ ନୁହେଁ, ଅଣୁ ନୁହେଁ, ହ୍ରସ୍ୱ ନୁହେଁ, ଦୀର୍ଘ ନୁହେଁ - ସେ ଲୋହିତ ନୁହେଁ, ସ୍ନେହ ନୁହେଁ, ଛାୟା ନୁହେଁ, ତମଃ ନୁହେଁ, ବାୟୁ ନୁହେଁ, ଆକାଶ ନୁହେଁ, ସେ ରସ ନୁହେଁ, ଶବ୍ଦ ନୁହେଁ, ଗନ୍ଧ ନୁହେଁ, ଆଖି ନୁହେଁ, କାନ ନୁହେଁ, ବାକ୍ୟ ନୁହେଁ, ମନ ନୁହେଁ, ତେଜ ନୁହେଁ, ପ୍ରାଣ ନୁହେଁ, ମୁଖ ନୁହେଁ,

ମାତ୍ରା ନୁହେଁ, ଭିତର ନୁହେଁ, ବାହାର ନୁହେଁ । ଏହିପରି 'ନେତି ନେତି'ରେ ହିଁ ସେହି ନିର୍ବିଶେଷ ବ୍ରହ୍ମଙ୍କ ସ୍ୱରୂପ ବେଦାନ୍ତରେ ନିର୍ଣ୍ଣୀତ ହୋଇଛି ।

**ବ୍ରହ୍ମ : ସଗୁଣ ମଧ୍ୟ :**

କିନ୍ତୁ ସବିଶେଷ ସଗୁଣ ବ୍ରହ୍ମଙ୍କ ସ୍ୱରୂପ ନିର୍ଣ୍ଣୟ କରିବାକୁ ଯାଇ ଶାସ୍ତ୍ର କହନ୍ତି -

ସତ୍ୟଂ ଜ୍ଞାନମ୍ ଅନନ୍ତଂ ବ୍ରହ୍ମ - ତୈତ୍ତିରୀୟ (୨/୧)
ବିଜ୍ଞାନମ୍ ଆନନ୍ଦଂ ବ୍ରହ୍ମ - ବୃହଦାରଣ୍ୟକ (୩/୯/୨୮)
ନିତ୍ୟୋ ନିତ୍ୟାନାଂ ଚେତନଶ୍ଚେତନାନାମ୍ - କଠ (୫/୧୩)
ଅଣୋରଣୀୟାନ୍ ମହତୋ ମହୀୟାନ୍ - କଠ (୨/୨୦)
ଅପାଣିପାଦୋ ଜବନୋ ଗ୍ରହୀତା ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ - ଶ୍ୱେତାଶ୍ୱତର (୩/୧୯)
ଭାରୂପଃ ସତ୍ୟସଂକଳ୍ପଃ ଆକାଶାତ୍ମା
ସର୍ବକର୍ମା ସର୍ବକାମଃ ସର୍ବଗନ୍ଧଃ ସର୍ବରସଃ ସର୍ବମିଦମ୍ ଅଭ୍ୟାତ୍ତଃ - ଛାନ୍ଦୋଗ୍ୟ(୩/୧୪/୨)

ବ୍ରହ୍ମଙ୍କର ଏଇ ଦ୍ୱିବିଧ ବିଭାବକୁ ଲକ୍ଷ୍ୟକରି ଆଚାର୍ଯ୍ୟ ଶଙ୍କର ତେଣୁ କହିଛନ୍ତି - **'ଦ୍ୱିରୂପଂ ହି ବ୍ରହ୍ମ ଅବଗମ୍ୟତେ ନାମରୂପବିକାରଭେଦୋପାଧିବିଶିଷ୍ଟଂ ତଦ୍‌ବିପରୀତଂ ଚ ସର୍ବୋପାଧିବିବର୍ଜିତମ୍'** - (ବ୍ରହ୍ମ ସୂତ୍ର ୧/୧/୧୨ ଶଙ୍କର ଭାଷ୍ୟ) । ଅର୍ଥାତ୍ ଉପନିଷଦ୍‌ରୁ ବ୍ରହ୍ମଙ୍କର ଏପରି ଦ୍ୱିବିଧରୂପ ଅବଗତ ହୋଇଥାଏ - ଗୋଟିଏ ନାମରୂପଭେଦୋପାଧି ବିଶିଷ୍ଟ ଏବଂ ଅନ୍ୟଟି ତଦ୍‌ବିପରୀତ ସର୍ବୋପାଧିବିବର୍ଜିତ । ତେଣୁ ଗୋଟିଏ ସବିଶେଷ, ସୋପାଧି, ସବିକଳ୍ପ, ସାଞ୍ଜନ ବା ସଗୁଣ ହେଲେ ସର୍ବତ୍ର ତାଙ୍କର ଲୀଳା ଅନୁଭବ କରିହେବ । ନିର୍ବିଶେଷ ନିରୁପାଧି ନିର୍ବିକଳ୍ପ, ନିରଞ୍ଜନ ଓ ନିର୍ଗୁଣ ବୋଲି କହିଲେ ବିଶେଷଣରେ ତାଙ୍କୁ ବିଶେଷିତ, ଲକ୍ଷଣରେ ଲକ୍ଷିତ, ଚିହ୍ନରେ ଚିହ୍ନିତ ବା ପରିଚୟରେ ପରିଚିତ କରିହେବ ନାହିଁ । ତେଣୁ ଜନୈକ ବୈଷ୍ଣବ ଦାର୍ଶନିକ ଯଥାର୍ଥରେ କହିଥିଲେ - **'ଯା ଯା ଶ୍ରୁତିର୍ଜଳ୍ପତି ନିର୍ବିଶେଷଂ, ସା ସାଭିଧତ୍ତେ ସବିଶେଷମେବ'** - ଅର୍ଥାତ୍ ଯେଉଁ ବେଦ ନିର୍ବିଶେଷ ବା ନିର୍ଗୁଣ ବୋଲି କହିଛନ୍ତି, ସେହି ବେଦ ସବିଶେଷ ବା ସଗୁଣ ବୋଲି ଘୋଷଣା କରିଛନ୍ତି । ଏ ବିଷୟରେ ପ୍ରମାଣ -

ଏତଦ୍ ବୈ ସତ୍ୟକାମ ! ପରଂ ଚ ଅପରଂ ଚ ବ୍ରହ୍ମ - ପ୍ରଶ୍ନ (୫/୨)

ଅର୍ଥାତ୍, ହେ ସତ୍ୟକାମ ! ଏହି ବ୍ରହ୍ମକୁ ହିଁ ପର ଓ ଅପର ବୋଲି କୁହାଯାଇଛି -

**ଦ୍ୱେ ବାବ ବ୍ରହ୍ମଣୋ ରୂପେ ମୂର୍ତ୍ତଂ ଚୈବାମୂର୍ତ୍ତଂ ଚ, ମର୍ତ୍ତ୍ୟଂ ଚାମୃତଂ ଚ ସ୍ଥିତଂ ଚ ଯଚ୍ଚ ସଚ୍ଚତ୍ୟଚ୍ଚ ।** ଅର୍ଥାତ୍ ବ୍ରହ୍ମ ଦ୍ୱିବିଧ - ମୂର୍ତ୍ତ ଓ ଅମୂର୍ତ୍ତ, ମର୍ତ୍ତ୍ୟ ଓ ଅମୃତ,

ସ୍ଥିର ଓ ଚର, ସତ୍ ଓ ତ୍ୟଦ୍ । ଏହାକୁ ହିଁ ମୈତ୍ରେୟୀ ଉପନିଷଦ୍ (୬/୬୨) , ଶବ୍ଦ ଓ ଅଶବ୍ଦ' ବୋଲି କହିଛନ୍ତି - 'ଶବ୍ଦଶ୍ଚ ଅଶବ୍ଦଶ୍ଚ - -- ଶବ୍ଦବ୍ରହ୍ମ ପରଂ ଚ ଯତ୍' - ଅର୍ଥାତ୍ ଶବ୍ଦବ୍ରହ୍ମ (ବା Logos) ଏବଂ ପରବ୍ରହ୍ମ ( ବା Absolute) । ଅତଏବ , ' ଦ୍ୱେ ବାବ ଖଲ୍ୱେତେ ବ୍ରହ୍ମଜ୍ୟୋତିଷୋ ରୂପକେ' - ମୈତ୍ରାୟଣୀ (୬/୩୨) - ବ୍ରହ୍ମଜ୍ୟୋତିର ଦ୍ୱିବିଧରୂପ: ଗୋଟିଏ ପରବ୍ରହ୍ମ ବା ନିର୍ଗୁଣ ବିଭାବ ବା ନିର୍ବିଶେଷ ଭାବ ଏବଂ ଅନ୍ୟଟି ଅପରବ୍ରହ୍ମ ବା ସଗୁଣ ବିଭାବ ବା ସବିଶେଷ ରୂପ ।

ନିର୍ବିଶେଷ ବା ନିର୍ଗୁଣ ଭାବକୁ 'ଅର୍ଥାତ୍, ଆଦେଶୋ ନେତି ନେତି' - ବୃହ (୨/ ୩/୬) ଏବଂ 'ସ ଏଷ ନେତି ନେତି ଆତ୍ମା - ବୃହ (୩/୯/୨୨) ରେ କୁହାଗଲା ବେଳେ, ଅନ୍ୟତ୍ର ପ୍ରକାରାନ୍ତରେ ହିଁ ନାହିଁ ଭିତରେ ଉଭୟ ଉଲ୍ଲେଖ କରି କୁହାଯାଇଛି - ନାନ୍ତଃପ୍ରଜ୍ଞଂ ନ ବହିଃପ୍ରଜ୍ଞଂ ନୋଭୟତଃ ପ୍ରଜ୍ଞଂ, ନ ପ୍ରଜ୍ଞାନଘନଂ ନ ପ୍ରଜ୍ଞଂ ନାପ୍ରଜ୍ଞମ୍, ଅଦୃଷ୍ଟମ୍ ଅବ୍ୟବହାର୍ଯ୍ୟମ୍ ଅଗ୍ରାହ୍ୟମ୍ ଅଲକ୍ଷଣମ୍ ଅଚିନ୍ତ୍ୟମ୍ ଅବ୍ୟପଦେଶ୍ୟମ୍ ଅର୍ଥାତ୍ ସେ ପ୍ରଜ୍ଞା ଅନ୍ତର୍ମୁଖ ନୁହେଁ କି ବହିର୍ମୁଖ ନୁହେଁ କି ଉଭୟମୁଖ ନୁହେଁ; ସେ ପ୍ରଜ୍ଞାନଘନ ନୁହେଁ କି ପ୍ରଜ୍ଞ ନୁହେଁ କି ଅପ୍ରଜ୍ଞ ନୁହେଁ ସେ ଦର୍ଶନ-ବ୍ୟବହାର-ଗ୍ରହଣ-ଲକ୍ଷଣ-ଚିନ୍ତା-ନିର୍ଦ୍ଦେଶ ପ୍ରଭୃତିର ଅତୀତ ।

ତେଣୁ ବ୍ରହ୍ମ ଜ୍ଞେୟ (Knowable) ନା ଅଜ୍ଞେୟ (unknowable ) ଅର୍ଥାତ୍ ଆମର ବୈଦିକ ଋଷିମାନେ ତତ୍ତ୍ୱଜ୍ଞ ଆସ୍ତିକ (gnostic) ନା ଅଜ୍ଞେୟ ବା ନାସ୍ତିକ ବୋଲି ପ୍ରଶ୍ନ କଲେ - ସେମାନେ ଉଭୟ ବୋଲି କହିବାକୁ ହେବ । ସେମାନଙ୍କ ଭାଷାରେ ନିର୍ଗୁଣ ବ୍ରହ୍ମ - ଅଜ୍ଞେୟ ଅମେୟ ଅବର୍ଣ୍ଣନନୀୟ :

**'ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ'** - ତୈତ୍ତି(୨/୪)

ଯାହା ନିକଟକୁ ସର୍ବଗ ମନ ଯାଇପାରେ ନାହିଁ ଓ ଯେଉଁ ବିଷୟ ବାଣୀ ପ୍ରକାଶ କରିବାରେ ଅସମର୍ଥ ହୁଏ -

**'ନୈବ ବାଚା ନ ମନସା ପ୍ରାପ୍ତୁଂ ଶକ୍ୟୋ ନ ଚକ୍ଷୁଷା'** - କଠ (୬/୧୨)

- ସେ ବାକ୍, ମନ ଓ ଚକ୍ଷୁ କାହାର ଗୋଚର- ବିଷୟ ନୁହନ୍ତି ବୋଲି ନିର୍ବିଷୟ । ମନ ମଧ୍ୟ ମନନ କରି ପାରିବ ନାହିଁ - 'ଯନ୍ମନସା ନ ମନୁତେ' - କେନ (୧/୫) । ବୁଦ୍ଧିର ମଧ୍ୟ ସେ ଅଗୋଚର - 'ନ ବିଦ୍ମୋ ନ ବିଜାନୀମୋ ଯଥୈତଦନୁଶିଷ୍ୟାତ୍' - କେନ (୧/୩) । ତେଣୁ ବିଦିତଠାରୁ ଓ ଅବିଦିତ ଠାରୁ ଆଉ ଏକ ଅଲୌକିକ ଦିବ୍ୟ ତତ୍ତ୍ୱ - **ଅନ୍ୟଦେବ ତଦ୍ ବିଦିତାଦ୍, ଅଥୋ ଅବିଦିତାଦ୍ ଅଧି** - (କେନ ୧/ ୩) । ଏହାକୁ ଆହୁରି ରହସ୍ୟାତ୍ମକ ଭାବରେ **'ଭୂତେଷୁ ଭୂତେଷୁ ବିଚିନ୍ତ୍ୟ ଧୀରାଃ, ପ୍ରେତ୍ୟାସ୍ମାଲ୍ଲୋକାଦମୃତା ଭବନ୍ତି** (କେନ ୨/୫) ବୋଲି କୁହାଯାଉଛି । ଏଥିପାଇଁ

ମାୟାର ଅବତାରଣା କରାଯାଇଛି । କିନ୍ତୁ ଏଠାରେ ମନେ ରଖିବାକୁ ହେବ ଯେ, ବେଦାନ୍ତର ମାୟା ଓ ତନ୍ତ୍ରର ମହାମାୟା ସମନାର୍ଥକ ନୁହେଁ । ବେଦାନ୍ତ - ମାୟାର ପାରମାର୍ଥିକ ସତ୍ତା ନାହିଁ । ଏହାର କେବଳ ବ୍ୟାବହାରିକ ସତ୍ତାମାତ୍ର ଅଛି । କିନ୍ତୁ ତନ୍ତ୍ରର ମହାମାୟା ତ୍ରିକାଳାବାଧିତା ସତ୍ତାରୂପିଣୀ ବ୍ରହ୍ମମୟୀ -ଉମା । ଏଥିଲାଗି ତନ୍ତ୍ର ଓ ବେଦାନ୍ତ ମଧ୍ୟରେ କୌଣସି ବିରୋଧ ନାହିଁ । କାରଣ ବେଦାନ୍ତ ହେଉଛି 'ସିଦ୍ଧାନ୍ତଶାସ୍ତ୍ର' ଓ ତନ୍ତ୍ର ହେଉଛି 'ସାଧନାଶାସ୍ତ୍ର' । ନିଷ୍କ୍ରିୟ, ନିର୍ଗୁଣ ଓ ନିରାକାର ବ୍ରହ୍ମ ସକ୍ରିୟ, ସଗୁଣ ଓ ସାକାର ହେଲେ 'ମହାମାୟା' ନାମରେ କଥିତ ହୁଅନ୍ତି ଓ ଉମା ରୂପରେ ପ୍ରକାଶ ପାଆନ୍ତି । ମହାମାୟା ବିଶ୍ୱବ୍ୟାପିନୀ ହେଲେ ମଧ୍ୟ ନାରୀମୂର୍ତ୍ତିରେ ତା'ର ସମଧିକ ପ୍ରକାଶ । ସକଳ ନାରୀ ହିଁ ମହାମାୟାର ସଚଳ ବିଗ୍ରହ : **ଉମା ।**

### ଅନୁବାଦ 'କେନ' ?

ଏପରି ଏକ ବ୍ରହ୍ମଜ୍ଞାନମୂଳକ କେନୋପନିଷଦ୍‌ର ଅନୁବାଦ ଓଡିଆ ସହ ସବୁଭାଷାରେ ଅନେକ ଥିଲେ ହେଁ କବି ସତ୍ୟାନନ୍ଦ ' କେନ' ଅର୍ଥାତ୍ କାହିଁକି ଏହାର ଅନୁବାଦରେ ହାତଦେଲେ ବୋଲି ପ୍ରଶ୍ନ ସ୍ୱାଭାବିକ ଭାବରେ ପାଠକ ମନରେ ଉଦିତ ହୋଇପାରେ । କିନ୍ତୁ ଓଡ଼ିଆ ଭାଷାରେ ଉପନିଷଦ୍ ମାନଙ୍କର ଯଥାଯଥ ଅନୁବାଦ ଆଜି ପର୍ଯ୍ୟନ୍ତ ହୋଇପାରି ନାହିଁ । ଆଚାର୍ଯ୍ୟ ହରିହର ହିନ୍ଦୀର ଅନୁସରଣରେ ଏବଂ ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମା ସରଳ ସଂସ୍କୃତ ବ୍ୟାଖ୍ୟା ସହ ଉପନିଷଦ୍ ମାନଙ୍କର ଅନୁବାଦ କରିଥିଲେ ହେଁ ଆଉ କେତେକ ପରୀକ୍ଷାର୍ଥୀଙ୍କ ପାଇଁ ଉପନିଷଦ୍ ଅନୁବାଦ କରିଛନ୍ତି ସତ କିନ୍ତୁ ଆଦର୍ଶ ପରମ୍ପରା ଓ ଶାସ୍ତ୍ରୀୟତା ଦୃଷ୍ଟିରୁ ସେ ଗୁଡିକ ଉପାଦେୟ ନୁହନ୍ତି । ସର୍ବଭାରତୀୟ ସ୍ତରରେ ଯେଉଁ ସବୁ ଉତ୍କୃଷ୍ଟ ସଂସ୍କରଣ ପ୍ରକାଶ ପାଇଛି ସେଗୁଡ଼ିକ ଆଚାର୍ଯ୍ୟ ପରମ୍ପରାରେ ଶୁଷ୍କ ଦାର୍ଶନିକ ମତବାଦର ନୀରସ ବିସ୍ତାର ଫଳରେ ସାଧାରଣ ପାଠକର ହୃଦ୍ୟ ହୋଇପାରିନାହିଁ । କବି ସତ୍ୟାନନ୍ଦ ନିର୍ଗୁଣ ବ୍ରହ୍ମଙ୍କ ସଗୁଣ ବିଭାବରେ ବିଭୋର ହୋଇ ତାଙ୍କର ହୃଦୟାନନ୍ଦକୁ ନିଜର ସ୍ୱଭାବ ସୁଲଭ କବିତ୍ୱ ବଳରେ ବହୁ ଉଦାହରଣ ମାଧମରେ ସରଳ, ସୁନ୍ଦର ଓ ପଲ୍ଲବିତ କରି ବୁଝାଇବାକୁ ଚେଷ୍ଟା କରିଛନ୍ତି । ଏଥିପାଇଁ ସେ ବହୁ ପ୍ରଚଳିତ ପୁରାଣର ଚଉଦ ଅକ୍ଷରୀ ମଙ୍ଗଳ ଗୁଜ୍ଜରୀ ବୃତ୍ତରେ ଅନ୍ତ୍ୟୋପଧା ନିୟମ ରକ୍ଷା କରି ଗ୍ରନ୍ଥଟିକୁ ସୁଖପାଠ୍ୟ କରିବାରେ ସମର୍ଥ ହୋଇଛନ୍ତି । 'ଶ୍ରୀମଦ୍ଭଗବଦ୍ ଗୀତା' ଓ 'ଈଶୋପନିଷଦ୍' ଓଡ଼ିଆ ସାହିତ୍ୟକୁ ସତ୍ୟାନନ୍ଦଙ୍କ ଏକ ମହନୀୟ ଅବଦାନ । ଉପନିଷଦ୍‌ର ଭାବାବଳିର ଦାର୍ଶନିକ କ୍ଲିଷ୍ଟତାକୁ ସେ ସାହିତ୍ୟର ସରସତାରେ ପୁଟିତ କରିଥିବାରୁ ତାଙ୍କର ହୃଦ୍ୟ ଅନୁବାଦ ' ସୁନାରେ ସୁଗନ୍ଧି' ପରି ଦିବ୍ୟ, ଦୀପ୍ତ ଓ ମହନୀୟ ହୋଇଛି ।

ମାନବ ହୃଦୟରୁ ଦାନବତ୍ୱ ଦୂର କରି ବେଦାନ୍ତ ଦ୍ୱାରା ହୈମବତୀ ଉମାଙ୍କର ଦିବ୍ୟଝଲକରେ ମଣିଷର ସର୍ବାନ୍ତଃକରଣକୁ ପୁଲକିତ କରିବା ପାଇଁ ସତ୍ୟାନନ୍ଦଙ୍କ 'ବେଦାନ୍ତ ପ୍ରଚାର ପରିଷଦ୍' ପକ୍ଷରୁ ପ୍ରକାଶିତ ଏହି ଉପନିଷଦ୍ ନିଶ୍ଚୟ ବହୁଜନ ହିତାୟ ଏକ ଦିବ୍ୟ ଅମ୍ଳାନ ଅବଦାନ ହେବ ଏବଂ ପାଠକ ମାନଙ୍କ ମଧ୍ୟରେ ପ୍ରସାର ଲାଭ କରିବ - ଏଥିରେ ମୋର ତିଳେ ମାତ୍ର ସନ୍ଦେହ ନାହିଁ । ବେଦାନ୍ତନୁଗତ ଜୀବନଯାପନ କରିବା ପାଇଁ କୌଣସି ନିର୍ଦ୍ଦିଷ୍ଟ ମନ୍ଦିର, ଗୀର୍ଜା ବା ମସ୍‌ଜିଦ୍ ଅନାବଶ୍ୟକ । ଏହା ଏକ ଜୀବନଧାରା । ଦେବତାତ୍ମା ହିମାଳୟରୁ ପ୍ରବାହିତ ଶୁଦ୍ଧ ଶୀତଳ ଗଙ୍ଗାମାତାର ପବିତ୍ର ଧାରାରେ ନିଜକୁ ଭସାଇଦେଲେ ଉପରେ ଅନନ୍ତ ଆକାଶର ନୀଳିମା, ଉଭୟ କୂଳରେ ଲମ୍ଵି ଯାଉଥିବା ତଟସ୍ଥ ବୃକ୍ଷରାଜିର ସବୁଜିମା ସହ ଶେଷରେ ଅପାର ଅଥଳ ଜଳରାଶିର ଶ୍ୟାମଳିମାରେ ଏକ ଦିବ୍ୟ ଭବ୍ୟ ଏକାତ୍ମାନୁଭବ ହେବ । କ'ଣ ପାଇଁ ଓ କାହା ପାଇଁ ପିତା ପରି ଆକାଶ ଆବୋରି ରହିଛି ଆମକୁ ଏବଂ ପାଣି, ପବନ ଓ ଆଲୋକର ବ୍ୟବସ୍ଥା କରି ବଞ୍ଚାଇ ରଖିଛି ଜୀବ ଜଗତ୍‌କୁ ? କିଏ କହ ବନରାଜିର ଗୁଳ୍ମଲତାରେ ସାଇତି ରଖିଛି ଜୀବଜଗତ୍‌ର ନିରାମୟ ଜୀବନ ପାଇଁ ଅମୋଘ ଓ ଅକ୍ଷୟ ମହୌଷଧି ? କେଉଁ କିପରି ମହାଶୂନ୍ୟରେ ଏ ଧରିତ୍ରୀମାତା ଉଦ୍‌ଯାନବୋମା ବିସ୍ଫୋରଣ ପରି ସକଳ ଆତ୍ମଘାତୀ ଅମାପ ଅତ୍ୟାଚର ସହି ଏତେବଡ ଜୀବ ଜଗତ୍‌କୁ ତଥାପି ଧରି ରଖିଛି ? ଏପରି କିଛି ମୌଳିକ ପ୍ରଶ୍ନକୁ ନେଇ ହିଁ 'ଈଶା', 'କେନ' ପରି ଆରମ୍ଭ ହୋଇଛି 'ଉପନିଷଦ୍' ଓ ରହସ୍ୟମୂଳକ ଜୀବନଜିଜ୍ଞାସାର କରିଛନ୍ତି ନିଗୂଢ଼ ସମାଧାନ । ଦୁର୍ବହ ଭୌତିକ ଜୀବନ ଜଞ୍ଜାଳରେ ପାରମାର୍ଥିକ ଶାନ୍ତି ପାଇ ଦିବ୍ୟ ଭବ୍ୟ ଅମୃତ ରସାସ୍ୱାଦନ କରିବାକୁ ହେଲେ ବେଦାନ୍ତର ଜୀବନଧାରାକୁ ସ୍ୱୀକାର କରି (୧) ନିତ୍ୟାନିତ୍ୟବସ୍ତୁବିବେକ, (୨) ଇହାମୁତ୍ରାର୍ଥଫଳଭୋଗବିରାଗ, (୩) ଶମାଦିଷଟ୍ ସମ୍ପତ୍ତି ଓ (୪) ମୁମୁକ୍ଷୁତ୍ୱ - ଏହି ସାଧନ ଚତୁଷ୍ଟୟରେ 'ଚରୈବେତି' ନ୍ୟାୟରେ ଆଗେଇ ଯିବାକୁ ହେବ ଏବଂ ଆତ୍ମୋପଲବ୍ଧି କରିବାକୁ ହେବ । ଏହି ଆତ୍ମୋପଲବ୍ଧି ଆମର ଆର୍ଯ୍ୟ ଋଷି ଓ ମନୀଷୀ ମାନେ କିପରି କରିଥିଲେ ତାର ଅନ୍ତର୍ଦୃଷ୍ଟିମୂଳକ ଉଲ୍ଲେଖ ହିଁ ଉପନିଷଦ୍ । ପରମାତ୍ମାଙ୍କ ପ୍ରଭାବରୁ କବି ସତ୍ୟାନନ୍ଦ ସେହି ଆର୍ଯ୍ୟମନୀଷୀଙ୍କ ସମଗ୍ର ଉପନିଷଦକୁ ଅନୁସର୍ଜନ (transcreation) କରି ଓଡ଼ିଆ ସାହିତ୍ୟପ୍ରେମୀମାନଙ୍କୁ ତାଙ୍କର ସତ୍ୟାନନ୍ଦଦାୟିନୀ ବ୍ୟାଖ୍ୟା ଦ୍ୱାରା ସତ୍ୟ ଓ ଆନନ୍ଦ ଦେଇ ଜଗତ୍‌କୁ ସତ୍ୟାନନ୍ଦମୟ କରନ୍ତୁ - ଏହାହିଁ କାମନା । ଓଁ ତତ୍ ସତ୍

ଶ୍ରୀ ମହାମେଧାନନ୍ଦନାଥ ସରସ୍ୱତୀ
ଅଧ୍ୟକ୍ଷ
ବେଦାନ୍ତ ପ୍ରଚାରପରିଷଦ, ଭୁବନେଶ୍ୱର - ୩୦

ବିଜୟା ଦଶମୀ
ଯୁଗାବ୍ଦ ୫୦୯୭

## ପ୍ରଶ୍ନୋତ୍ତର ପରମ୍ପରା :

ଆମ ସଂସ୍କୃତିର ପ୍ରଶ୍ନୋତ୍ତର ପରମ୍ପରା,
ଆମ ପାଇଁ ସଜାଇଛି ଜ୍ଞାନର ପସରା ।
ନାନାଦି ନିଗମାଗମ ପୁରାଣ ସଂହିତା
ଛନ୍ଦ କଳ୍ପ ବ୍ୟାକରଣେ କେତେ ଯେ ଶୋଭିତା ।
ଆର୍ଯ୍ୟ ମୁନି ଋଷିଙ୍କର ଅନୁଭୂତି ଜ୍ଞାନ
କରିଛି ଏ ପସରାକୁ ଅଶେଷ ମହାନ ।

କେତେ କେ ପଚାରିଛନ୍ତି, କେତେ କହିଛନ୍ତି
କଲ୍ୟାଣକର ସେ ସବୁ ସାରା ବିଶ୍ୱ ପ୍ରତି ।
ଜଳିଲା ଯେ ଜ୍ଞାନ-ଶିଖା ଦିନେ ବନଭୂମେ,
ଅଲିଭା ରହିଲା ତାହା କାଳ-ମଣ୍ଡପମେ ।

ଭରଦ୍ୱାଜ ଋଷିଙ୍କର ବିନୟ ପ୍ରଶ୍ନରେ,
ମୁନି ଯାଜ୍ଞବଲ୍କ୍ୟ ଯାହା କହିଲେ ଉତ୍ତରେ;
ପୁଣି ଗରୁଡ଼ଙ୍କ ପ୍ରଶ୍ନେ ଭୂଷୁଣ୍ଡି-ବାୟସ
ଶୁଣାଇଲେ ପୂର୍ବେ ଯେଉଁ ରମ୍ୟ ରାମ-ରସ;
ଉମା ପ୍ରଶ୍ନ କଲେ, ହର କହିଲେ ଉତ୍ତରେ
ସେହି ରାମ-କଥା ଆଜି ଜଗତେ ପ୍ରସରେ ।

ଶୌନକାଦି ମୁନିଗଣେ ନୈମିଷ ଅରଣ୍ୟେ,
ସୂତଙ୍କୁ ପଚାରିଥିଲେ ଆକୁଳିତ ମନେ,
ଶୁକ-ମୁଖ ନିଗଳିତ ଭାଗବତାମୃତ
ପ୍ରତି ପ୍ରାଣ ପୁରେ ଆଜି ହୁଅଇ ଝଙ୍କୃତ ।

ଭାରତ ସମରେ ବୀର ପାର୍ଥ ଧନଞ୍ଜୟ,
ପଚାରିଲେ କୃଷ୍ଣେ ଯେଉଁ ପ୍ରାଣର ସଂଶୟ,

'ଗୀତା' ରୂପେ ତାହା ଆଜି ଜଗତ ବିଦିତ,
ଯୋଗୀ ଭୋଗୀଙ୍କର ଚିର-ସମ୍ପତ୍ତି ସେହି ତ ।
ସେହିପରି ବସି ଆର୍ଯ୍ୟ ଋଷି ପାଦତଳେ,
ସବିନୟେ କରି ସେବା ଆବେଗ ଅନ୍ତରେ,
ଯେ ଆତ୍ମ-ଜିଜ୍ଞାସା କଲେ ତପୀ ଶିଷ୍ୟଗଣେ,
ସେ 'ଉପନିଷଦ' ରୂପେ ଆଦୃତ ଭୁବନେ ।

ଶିକ୍ଷାର୍ଥୀଙ୍କ ପାଇଁ ପୂର୍ବ ଗୁରୁକୁଳାଶ୍ରମ,
ଯହିଁ ପ୍ରଶ୍ନୋତ୍ତର-ଧାରା ଥିଲା ଅନୁପମ,
ସେ ସାଧନା ଆଲୋଚନା ତର୍କ ଅଧ୍ୟାପନା,
ଆଜି ବି ଜଗାଏ ପ୍ରାଣେ ମଧୁର ପ୍ରେରଣା ।
ତପ ଯଜ୍ଞମୟ ବନଭୂମି ଏକାଧାରେ
ମୁଖରିତ ହେଉଥିଲା ବେଦର ଓଁକାରେ ।
ଆତ୍ମ-ନିଷ୍ଠ ଗୁରୁ ଆଉ ଶିଷ୍ୟ ଆତ୍ମାନ୍ୱେଷୀ-
ପରସ୍ପର ପ୍ରତି ଥିଲେ ପରମ ହିତୈଷୀ ।।

ପଣ୍ଡିତ ହୋଇବ ଜଣେ ଶାସ୍ତ୍ର ଅଧ୍ୟୟନେ,
କିନ୍ତୁ ଗୁରୁ କାହିଁ ବିନା ଆତ୍ମ-ଦରଶନେ ?
ଅପରୋକ୍ଷ ଅନୁଭୂତି ସମ୍ପନ୍ନ ଯେ ଜନ,
ଆତ୍ମଦର୍ଶୀ ଗୁରୁପଦେ ହୁଅନ୍ତି ଗଣନ ।

ଗୁରୁ ଭଗବାନ ଦୁହେଁ ଅଭିନ୍ନ ଏକକ,
ଈଶ୍ୱରଙ୍କ ପରି "ଗୁରୁ-ତତ୍ତ୍ୱ" ଯେ ବ୍ୟାପକ ।

ଗୁରୁପଦେ କରି ଶିଷ୍ୟ ଆତ୍ମ ସମର୍ପଣ
ହୁଅନ୍ତି ମୁକତ ଜନ୍ମ ମରଣ ବନ୍ଧନ ।
ମଞ୍ଜିଟି ନିଜର ସତ୍ତା ହଜାଇ ମାଟିରେ
ନ ମିଶିଲେ ଗଜା କଣ ଉଠଇ ଭୂଇଁରେ ?

ନିୟମ ସଂଯମ ନିଷ୍ଠା ବ୍ରତେ ଦୃଢ଼ ରହି,
ହୋଇ ଧୀର ଶାନ୍ତ ନମ୍ର ବିନୀତ ବିନୟୀ,
ଆତ୍ମ-ଅହଂକାର ଗର୍ବ ମନରୁ ତିଆଗି,
ଗୁରୁ ଆଜ୍ଞା ଆଦେଶରେ ହୋଇ ଅନୁରାଗୀ,
ଶିକ୍ଷାର୍ଥୀ ବସନ୍ତି ଯାଇ ଗୁରୁ ପାଦ ପାଶେ,
ଜୀବନ ରହସ୍ୟ ଶିକ୍ଷା ପାଇବା ସକାଶେ ।
ଉଚ୍ଚରୁ ନିମ୍ନକୁ ଯେହ୍ନେ ବହିଯାଏ ଜଳ,
ତେସନେ ଊର୍ଦ୍ଧ୍ୱରୁ ଖସେ ଜ୍ଞାନ ସୁବିମଳ ।

ଯେସନେ ଅଭିଜ୍ଞ ସୁସ୍ଥ ସବଳ ଯୁବକ
ଗିରି ଶୃଙ୍ଗ ଆରୋହଣେ ହୁଅଇ ସମର୍ଥ,
ସାହସ ଉଦ୍ୟମ ବଳ ବିଶେଷ ଆଗ୍ରହ
ଶୃଙ୍ଗ ଆରୋହଣ ପାଇଁ ଲୋଡ଼ା ଅତିଶୟ ।
ତେସନେ ଏ ଆଧ୍ୟାତ୍ମିକ ପଥ ଅନୁସରି,
ଦେହ ବୁଦ୍ଧି ମନେ ଅଭିନବ ବଳ ଧରି,
ବେନି ଗୁରୁ-ଶିଷ୍ୟ ବନେ କରନ୍ତି ସାଧନା
ଭକ୍ତିରେ ବ୍ରହ୍ମଙ୍କ ପାଶେ କରି ନିରାଜନା ।
ଆତ୍ମ-ନିବେଦନ ଭାବ ନିର୍ମଳ ଅନ୍ତର,
ଶ୍ରଦ୍ଧାବାନ ଶିଷ୍ୟ ଜ୍ଞାନ ଲଭନ୍ତି ସତ୍ୱର ।
ଶିଷ୍ୟ କି କରିବା କଥା ଜ୍ଞାନ ଲାଭ ପାଇଁ
ଗୀତାରେ ପାର୍ଥଙ୍କୁ କୃଷ୍ଣ ଥିଲେ ତ ବୁଝାଇ -
''ଦଣ୍ଡବତ ପ୍ରଣିପାତ କରି ଗୁରୁ ପାଦେ,
ସେବା କରି ପ୍ରଶ୍ନ କରି, ତାଙ୍କରି ପ୍ରସାଦେ,
ଶିକ୍ଷା କର ଆତ୍ମ-ଜ୍ଞାନ ମହିମା ଅଶେଷ ।
ତତ୍ତ୍ୱଦର୍ଶୀ ଜ୍ଞାନୀ ଗୁରୁ ଦେବେ ଉପଦେଶ ।''
ଗୁରୁଙ୍କୁ ପଚାର ପ୍ରଶ୍ନ-''ମୁଁ କିଏ ? କିପରି
ସଂସାର-ବନ୍ଧନ-କ୍ଳେଶ ସହୁଚି ଏପରି ?

କି କଲେ ଏଥିରୁ ମୁହିଁ ହୋଇବି ମୁକତ ?
କି କଲେ ଜାଣିବି ଆତ୍ମ-ଦରଶନ ପଥ ?"
ତୁମ ମନ ସଂଶୟକୁ ଗୁରୁ ପାଶେ ଫେଇ
ଦିଅ ଗୁରୁଙ୍କର ଜ୍ଞାନ-ପେଟିକା ଫିଟେଇ ।
ପ୍ରଶ୍ନ କଲେ ମନେ ଉଠେ ଯେ ସବୁ ସଂଶୟ,
ତାହାର ଉତ୍ତର ଗୁରୁ ଦିଅନ୍ତି ନିଶ୍ଚୟ ।
ଜଳନ୍ତା ପ୍ରଦୀପ ଯେହ୍ନେ ଆନ ପ୍ରଦୀପରେ,
ଆଲୋକ ଜଳାଇ ଥାଏ ସ୍ୱଭାବ ଗୁଣରେ,
ଜିଜ୍ଞାସୁ ଶିଷ୍ୟକୁ ହୃଦେ ଅନୁକମ୍ପା ଭରି
ଆତ୍ମଜ୍ଞାନ ବିତରନ୍ତି ସଦ୍‌ଗୁରୁ ସେପରି ।
ମାଗିଲେ ମିଳଇ, ଦେଲେ ବଢ଼ଇ ସମ୍ବଳ,
ଗୁରୁ ଶିଷ୍ୟଙ୍କର ଏହି ବିଶ୍ୱାସ ଅଟଳ ।

କିଏ ସେ, କିପରି, କିଆଁ- ପ୍ରଶ୍ନ ଜରିଆରେ
ତତ୍ତ୍ୱ-ଜ୍ଞାନ-ପେଡ଼ି ଫିଟା ହୋଇଛି ଏଠାରେ ।
ପ୍ରଶ୍ନ ନ ଜାଗିଲେ ପ୍ରାଣେ ଆକୁଳତା ଭରି,
କାହା ଜ୍ଞାନ-ତୃଷା କହ ମେଣ୍ଟିବ କିପରି ?
ଦରୋଟି ବଚନେ ଶିଶୁ ସୁକୁମାର କଳି,
ଜାଣିବାକୁ ସବୁ କଥା ପଚାରେ ଯେପରି,
ସେପରି ପୁଚ୍ଛନ୍ତି ପ୍ରଶ୍ନ ଶିଷ୍ୟ ଗୁରୁପାଶେ,
ସୃଷ୍ଟିର ରହସ୍ୟ ସବୁ ଜାଣିବା ସକାଶେ ।
ଅସୀମ ସାଧନା ତୀବ୍ର ଅନୁଭୂତି ଫଳେ
ଆର୍ଯ୍ୟ ଋଷି ଯେଉଁ ସତ୍ୟ ଲଭିଲେ ଶେଷରେ,
ତାହାକୁ ସେ ଶିଷ୍ୟକୁଳେ ପାଖରେ ବସାଇ
ଉପନିଷଦର ମନ୍ତ୍ରେ ଯାଇଛନ୍ତି ଗାଇ ।।

## କେନୋପନିଷଦ୍ କାହିଁକି ?

'ଈଶୋପନିଷଦ' ପରି 'କେନୋପନିଷଦ'
ରଚିତ ହୋଇଛି ଧରି "କେନ" ଆଦ୍ୟ ଶବ୍ଦ ।
ଆମ ଆର୍ଯ୍ୟ ସଂସ୍କୃତିର ଭାରତୀ ଭଣ୍ଡାରେ
ଯେତେ ରତ୍ନ ଭରା, ବେଦ ସଂହିତା ଆକାରେ,
ତହିଁରେ ଏ "କେନ" ସ୍ଥାନ ନିଶ୍ଚିତ ଉଚ୍ଚରେ
ଏ କଥା ସ୍ୱୀକୃତ ଜ୍ଞାନୀ-ଗୁରୁଙ୍କ ମତରେ ।
ନିଗୂଢ଼ ଦର୍ଶନ-ତତ୍ତ୍ୱେ ଏ ଗ୍ରନ୍ଥ ଶୋଭିତ,
ପ୍ରଶ୍ନୋତ୍ତର ଛନ୍ଦେ ତତ୍ତ୍ୱ-ଜ୍ଞାନ ବିକଶିତ ।
ମନକୁ ସ୍ଥୂଳରୁ ସୂକ୍ଷ୍ମେ ଘେନି ଯିବା ପାଇଁ,
କାର୍ଯ୍ୟରୁ କାରଣ-ଗଣ୍ଠି ଦେବାକୁ ଫିଟାଇ
କରିଛି ବିପୁଳ ଯତ୍ନ ଏ ଉପନିଷଦ,
ପ୍ରତି ମନ୍ତ୍ରେ ଭରି କେତେ ମଧୁମୟ ଛନ୍ଦ ।
ଏ ଗ୍ରନ୍ଥ ଗଭୀର ଗୂଢ଼ ପ୍ରଶ୍ନୋତ୍ତର ଛନ୍ଦେ
ମଣିଷ-ସତ୍ତାର ମୂଳ ପ୍ରକଟିତ କରେ ।
ନ ମଞ୍ଜିବା ଯାଏଁ ଦିବ୍ୟ ଚେତନାରେ ଚିତ୍ତ
ଆତ୍ମ-ଚେତନାକୁ ଏହା କରେ ବିସ୍ତାରିତ ।।

ଆମେ କହୁଁ ସ୍ଥୂଳ ସୂକ୍ଷ୍ମ ଦୁଇଟି ପଦାର୍ଥ,
କିନ୍ତୁ ପ୍ରକୃତରେ ତାହା ଏକ ସତ୍ତା ମାତ୍ର ।
ବରଫର ଖଣ୍ଡ, ପାଣି, ବାଷ୍ପ ସୁବିମଳ,
ଭିନ୍ନ ଭିନ୍ନ ଅବସ୍ଥା ଏ ପାଣିର କେବଳ ।
ଏ ପାଣିର ସ୍ଥୂଳାବସ୍ଥା ବରଫ ଯେପରି
ସୂକ୍ଷ୍ମ ଅବସ୍ଥାରେ ତାହା ବାଷ୍ପ ସେହିଭଳି ।
ସ୍ଥୂଳ ଯେ ଆକାର ଯୁକ୍ତ, ନେତ୍ରେ ପ୍ରତିଭାତ
ସୂକ୍ଷ୍ମ ନିରାକାର ଚତୁର୍ଦ୍ଦିଗେ ପରିବ୍ୟାପ୍ତ ।

ଆତ୍ମା, ସୂକ୍ଷ୍ମ ଅବିନାଶୀ ଅନନ୍ତ ଅଲେଖ
ବିଶୁଦ୍ଧ ଚେତନ, ନାହିଁ କିଞ୍ଚିତ ପ୍ରଲେପ ।
ମନ-ବୁଦ୍ଧି-ଅହଂ-ମୂଳ ସ୍ଥୂଳ ଦେହ ଏହି
ସୂକ୍ଷ୍ମ ଆତ୍ମା ତହିଁ ରହେ ନ ଜାଣନ୍ତି କେହି ।
ପଞ୍ଚକୋଷ ପଞ୍ଜୁରୀରେ ପକ୍ଷୀ ଅଛି ରହି
କେତେବେଳେ ଯିବ ଉଡ଼ି କେ ପାରିବ କହି ?
ତାହାକୁ ଜାଣିବା ପାଇଁ ତପୀ ଶିଷ୍ୟଗଣେ,
ପଚାରନ୍ତି ପ୍ରଶ୍ନ ଅତି କୁତୂହଳୀ ମନେ ।

## ଅହଂର ବିନାଶ ପରେ

ବ୍ରହ୍ମ ବା ଆତ୍ମାଙ୍କୁ କଳି ନ ପାରନ୍ତି କେହି,
ନେତ୍ରେ ନ ଦିଶନ୍ତି କର୍ଣ୍ଣେ ନ ଶୁଭନ୍ତି ସେହି ।
ମନରେ କେ ଚିନ୍ତି ତାଙ୍କୁ କରିବ କଳନା,
ସେ ତ ଜ୍ଞାନାତୀତ ମନ ବୁଦ୍ଧିକୁ ଅଜଣା ।
ସେ ସତ୍ୟଙ୍କ ବିଷୟରେ କହିବାକୁ ଯାଇ
ସତ୍ୟଦ୍ରଷ୍ଟା ଋଷି କେତେ ମନ୍ତ୍ର ଗଲେ ଗାଇ ।
ଗୂଢ଼ ଶବ୍ଦାବଳି ମନ୍ତ୍ରେ କରି ବ୍ୟବହାର
ବ୍ରହ୍ମାଭାସ ଲଭିବାକୁ ଯତ୍ନ ଅନିବାର ।
ବ୍ରହ୍ମଙ୍କୁ ଜାଣିବା ପାଇଁ କରି ଅଭିଳାଷ,
ମନ ବୁଦ୍ଧି ଦ୍ୱାରା ଯଦି କେ କରେ ପ୍ରୟାସ,
ତେବେ ବୃଥା ହୁଏ ଶ୍ରମ ଜିଜ୍ଞାସୁର ପାଶେ;
ପବନକୁ କେ ବାନ୍ଧିଛି ରଜ୍ଜୁ ଅବା ଫାଶେ ?
ଜ୍ଞାନ ବୁଦ୍ଧି ଚତୁରତା ଯେତେ ଲଗାଇଲେ
ବ୍ରହ୍ମଙ୍କ ବିଷୟେ ଜ୍ଞାନ ଟିକିଏ ନ ମିଳେ ।
ଜ୍ଞାନ ବୁଦ୍ଧି ଯେତେ ଚର୍ମ ପାଦୁକା ପରାୟେ,
ତାହା ଯାଏ ଦେବାଳୟ ଫାଟକର ଯାଏଁ ।

ଦେବ ସିଂହାସନ ଯାଏଁ କେହି ଭକ୍ତ ଜନ,
ପାଦେ ଜୋତା ପିନ୍ଧି କେବେ ନ କରେ ଗମନ ।
କେବଳ ହୃଦୟ ଭକ୍ତି-ଥାଳ ଧରି ହାତେ
ଯେ କେହି ଚଳଇ ଦେବତାର ପଦ ପ୍ରାନ୍ତେ ।
ତେହ୍ନେ ଜ୍ଞାନ ବୁଦ୍ଧି ବିଦ୍ୟା ବଢ଼େଇକି ନେଇ,
ବ୍ରହ୍ମ-ବିଦ୍ୟା ପାଶେ ଯାଇ ନ ପାରନ୍ତି କେହି ।
ସମର୍ପିତ ଭାବ ଘେନି ମନରେ ତୁମର
ବ୍ରହ୍ମ -ବିଦ୍ୟା ପାଶେ ଯାଇ ପାରିବ କେବଳ ।
ସୂର୍ଯ୍ୟ ଆଗେ ସିଧା ଥିଲେ ପଡ଼େ ଡେଙ୍ଗା ଛାଇ
ନଇଁ ଗଲେ ଅଧା, ଶୋଇ ଗଲେ ଛାଇ କାହିଁ ?
ଆମ ଅହଂକାର ଯେତେ 'ମୁଁ'କାରର ଛାଇ,
ସବୁକୁ ଦେବତା ପଦେ ସମର୍ପିବା ପାଇଁ,
ସାଷ୍ଟାଙ୍ଗ ପ୍ରଣାମ ସର୍ବେ କରିବା ଉଚିତ,
'ମୁଁ' କାର ମରିଲେ ହୁଏ ସର୍ବମୟ ହିତ ।
ସମର୍ପିତ ଭକ୍ତିପୂତ ହୃଦୟ ଯାହାର,
ବ୍ରହ୍ମ ଉପଲବ୍ଧି ହୁଏ କେବଳ ତାହାର ।
ସବୁ ଦେଇ ଦେଲେ ଯଦି ବହୁତ ମିଳଇ
ଅହଂକାରଟିକୁ ମୂଢ଼ କିଆଁ ସାଇତଇ ?
ସବୁ ଦେଇ ହୁଅ ତୁମେ ସବୁର ମାଲିକ,
ମାଗି ଯେତେ ପାଇଲେ ବି ନ ହେବ ଅଧିକ ?
ସେପରି ଜିଜ୍ଞାସୁ-ମନ କରି ଗଣିଧନ,
ଏ ଉପନିଷଦୁଁ ଖୋଜ ବ୍ରହ୍ମ-ସୁରତନ ॥

# ଶାନ୍ତିପାଠ

**ଓଁ ସହ ନାବବତୁ । ସହ ନୌ ଭୁନକ୍ତୁ । ସହ ବୀର୍ଯ୍ୟଂ କରବାବହୈ ।**
**ତେଜସ୍ୱି ନାବଧୀତମସ୍ତୁ । ମା ବିଦ୍ୱିଷାବହୈ ॥**
**ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ॥**

*ଓଁ ଆପ୍ୟାୟନ୍ତୁ ମମାଙ୍ଗାନି ବାକ୍ ପ୍ରାଣଶ୍ଚକ୍ଷୁଃ ଶ୍ରୋତ୍ରମଥୋ*
*ବଳମିନ୍ଦ୍ରିୟାଣି ଚ ସର୍ବାଣି । ସର୍ବଂ ବ୍ରହ୍ମୌପନିଷଦମ୍ ।*

*ମାଽହଂ ବ୍ରହ୍ମ ନିରାକୁର୍ଯାଂ, ମା ମା ବ୍ରହ୍ମ ନିରାକରୋତ୍;*
*ଅନିରାକରଣମସ୍ତୁ, ଅନିରାକରଣଂ ମେଽସ୍ତୁ ।*

*ତଦାତ୍ମନି ନିରତେ ଯ ଉପନିଷତ୍ସୁ ଧର୍ମାସ୍ତେ ମୟି ସନ୍ତୁ,*
*ତେ ମୟି ସନ୍ତୁ ॥ ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।*

ଆମ ବେନି ଗୁରୁ ଶିଷ୍ୟେ ସମାନ ଭାବରେ
ବ୍ରହ୍ମ ନିରଞ୍ଜନ ରକ୍ଷା କରନ୍ତୁ ସତ୍ୱରେ ।
ଆମ ଉଭୟଙ୍କୁ ସମ ଭାବେ ବିଦ୍ୟାଫଳ
ସେ ଭୋଗ କରାନ୍ତୁ ହୋଇ କରୁଣାଶୀତଳ ।
ଆମେ ବେନି ସମ ଭାବେ ବିଦ୍ୟା ଅରଜନେ
ଅଶେଷ ସାମର୍ଥ୍ୟ ଲାଭ କରିବୁ ଯେସନେ ।
ତେଜଯୁକ୍ତ ହେଉ ଆମ ବିଦ୍ୟା ଅଧ୍ୟୟନ,
ପରସର ମଧ୍ୟେ ଦ୍ୱେଷ ନୋହୁ କଦାଚନ ।
ଆମର ତ୍ରିବିଧ ବିଘ୍ନ ହେଉ ବିନାଶନ,
ହେ ପରମ ପ୍ରଭୁ ସ୍ୱାମୀ ବ୍ରହ୍ମ ନିରଞ୍ଜନ ।

ମୋ ଅଙ୍ଗ ସମୂହ ବାକ୍ ପ୍ରାଣ ଚକ୍ଷୁ କର୍ଣ୍ଣ,
ବଳ ଓ ଇନ୍ଦ୍ରିୟେ ସବୁ ହୁଅନ୍ତୁ ବର୍ଦ୍ଧନ ।
ସବୁ କିଛି ବ୍ରହ୍ମ ରୂପ, ନୁହେଁ କିଛି ଆନ,
ଉପନିଷଦେ ଏ ସତ୍ୟ ହୋଇଛି ପ୍ରମାଣ ।

ମୁଁ ଯେପ୍ରେ ବ୍ରହ୍ମଙ୍କୁ କରେ ନାହିଁ ଅସ୍ୱୀକାର,
ଦୂର ନ କରନ୍ତୁ ବ୍ରହ୍ମ ମୋତେ ସେ ପ୍ରକାର ।
ବ୍ରହ୍ମ ପାଶେ ନୋହୁ କେବେ ମୋ ନିରାକରଣ
ମୋ ନିକଟେ ହେଉ ମଧ୍ୟ ବ୍ରହ୍ମଙ୍କ ତେସନ ।
ଯେଉଁ ଧର୍ମ ଅଛି ଉପନିଷଦ ନିକରେ,
ମୋ ଆତ୍ମାରେ ସେହି ସବୁ ରହୁ ନିରନ୍ତରେ ।
ହେ ବ୍ରହ୍ମ, ତୁମଙ୍କୁ ସଦା କରେ ନିବେଦନ,
ମୋହରି ତ୍ରିବିଧ ବିଘ୍ନ ହେଉ ବିନାଶନ ॥

ବିଘ୍ନ ବିନାଶନ ପାଇଁ ଇଷ୍ଟଙ୍କୁ ସ୍ମରଣ,
ଆମ ସଂସ୍କୃତିର ଜାଣ ବିଶିଷ୍ଟ ଲକ୍ଷଣ ।
ଯାତ୍ରା ଶୁଭ ହେବା ପାଇଁ ଯାତ୍ରାରମ୍ଭ କାଳେ
ଇଷ୍ଟଙ୍କୁ ସୁମରି ଯାତ୍ରୀ ପଦାକୁ ବାହାରେ ।
ଚିଠି ଖଣ୍ଡେ ଲେଖିଲେ ବି ଇଷ୍ଟଙ୍କୁ ସୁମରି
ଲେଖାରମ୍ଭ କରିଥାଏ ଲେଖକ ଯେପରି;
ଚାଷ କାର୍ଯ୍ୟ ଆରମ୍ଭରେ କୃଷକ ସେପରି
ଚାଷ ଅନୁକୂଳ କରେ ଇଷ୍ଟଙ୍କୁ ସୁମରି ।
ବିଦ୍ୟାରମ୍ଭେ ଖଡ଼ି ଛୁଆଁ ଗୁରୁ ସନ୍ନିଧାନେ,
ହୁଏ ବିଘ୍ନରାଜ ପୂଜା ଉଚିତ ବିଧାନେ ।
ସବୁ ବିଘ୍ନନାଶ ପାଇଁ କେ କରେ ସ୍ମରଣ,
ବିଘ୍ନ ବିନାଶକ ବିନାୟକ ଗଜାନନ ।
ପ୍ରତି କାବ୍ୟାରମ୍ଭେ ତେଣ୍ଣେ ମଙ୍ଗଳାଚରଣ
ବିଘ୍ନନାଶ ପାଇଁ କରା ହୁଅଇ ସମ୍ପନ୍ନ ।
ମନ୍ତ୍ରକୁ କରିବା ପାଇଁ ପୂତ ବୀର୍ଯ୍ୟଶାଳୀ
ମନ୍ତ୍ରପାଠ କରାଯାଏ ଓଁକାର ଉଚ୍ଚାରି ।
ପ୍ରତି ଉପନିଷଦର ଆରମ୍ଭେ ତେସନେ
ମାଙ୍ଗଳିକୀ ଉଚ୍ଚାରନ୍ତି ଗୁରୁ ଶିଷ୍ୟଗଣେ ॥

ଏ ଶାନ୍ତିପାଠରୁ ଏଥି ମିଳଇ ସୂଚନା,
ଗୁରୁ ଶିଷ୍ୟ ବେନିଙ୍କର ମିଳିତ ପ୍ରାର୍ଥନା ।
ନିର୍ମଳ ସରଳ ସଂଘ-ଜୀବନ ଯାପନ
ବ୍ରହ୍ମବିଦ୍ୟା ଶିକ୍ଷା ପାଇଁ ଅତି ପ୍ରୟୋଜନ ।
ସକଳ ପ୍ରକାର ବିଘ୍ନ ବିନାଶ ନିମନ୍ତେ
କାମନା କରନ୍ତି ଗୁରୁ ଶିଷ୍ୟେ ହୃଦଗତେ ।
ଅନ୍ତରେ ଆଶଙ୍କା ଜାଗେ, ଅହରହ ଭୟ,
କାଳେ ଉପୁଜିବ ତାଙ୍କ ଭିତରେ କଳହ ।
ବିଦ୍ୟାଭ୍ୟାସ କାଳେ ବୃଥା ବାକ୍ୟ ଯୁକ୍ତି ତର୍କ
ତିକ୍ତ କରିପାରେ ଅବା ମଧୁର ସମ୍ପର୍କ ।
ବିନତି କରନ୍ତି ତେଣୁ ମିଳି ଏକ ସ୍ୱରେ
ନ ହେଉ ଯେପରି ଦ୍ୱେଷ କାହାରି ମନରେ ।
ଗୁରୁ ଶିଷ୍ୟ ବେନିଙ୍କର ସହଯୋଗ ଫଳେ,
ଏ ବିଦ୍ୟାରେ ସିଦ୍ଧି ଆଶା ଅଙ୍କୁରେ ମନରେ ।
ହୃଦୟେ ମନାସି ମନ୍ତ୍ର ସିଦ୍ଧି ସମ୍ଭାବନା
କରନ୍ତି ଉଭୟେ ମିଶି ଏପରି ପ୍ରାର୍ଥନା ।

ଶେଷ ପାଠେ ଗୁରୁ ଶିଷ୍ୟ ହୋଇ ଏକମନା,
ଦେହ ଅଙ୍ଗାଦିର ପୁଷ୍ଟି କରନ୍ତି କାମନା ।
ମାନସିକ ଆଧ୍ୟାତ୍ମିକ ଦୈହିକ ବିକାଶ,
ପ୍ରତ୍ୟେକ ସାଧକ ହୃଦେ କରନ୍ତି ପ୍ରୟାସ ।
ସଂକୀର୍ଣ୍ଣ ହୃଦୟେ ଭଙ୍ଗା ଦେହେ ଭଙ୍ଗା ମନେ,
ଆତ୍ମ-ଜ୍ଞାନ ପଥେ କିଏ ଚାଲିବ କେମନେ ?
ଯେ କୌଣସି ସାଧନା ବା ଯେ କୌଣସି କର୍ମେ
ଶରୀର ସୁସ୍ଥତା ଲୋଡ଼ା ହୁଅଇ ପ୍ରଥମେ ।
ଦଦରା ନାଆରେ ନଈ ପାରେ ତରି କିଏ ?
ମଜଭୁତ ଡଙ୍ଗା ତେଣୁ ଲୋଡ଼ନ୍ତି ସଭିଏଁ ।

ଏଣୁ ପୂର୍ଣ୍ଣ ବିକଶିତ ସ୍ୱାସ୍ଥ୍ୟ କରି ଆଶା,
ଶାନ୍ତିପାଠ ମନ୍ତ୍ରେ ଫୁଟି ଉଠେ ଏହି ଭାଷା ।
ସବୁ କିଛି ଜାଣ ବ୍ରହ୍ମମୟ ଏ ଜଗତେ,
ପ୍ରତିପାଦିତ ଏ ସତ୍ୟ ଏ ଉପନିଷଦେ ।
ଏକ ବ୍ରହ୍ମ ବିରାଜିତ ଅଖିଳ ଭୁବନେ,
ମାୟାରେ ଭିନ୍ନତା ଯାହା ଦିଶଇ ନୟନେ ।
ତେଣୁ ସେ ବ୍ରହ୍ମଙ୍କୁ ହୃଦେ ମାନିବି ଯେପରି,
ସେ ମୋତେ ଜାବୁଡ଼ି ଧରି ରଖନ୍ତୁ ସେପରି ।
ତାଙ୍କ ସହ ମୋର ଆଉ ମୋ ସହ ତାଙ୍କର
ନିବିଡ଼ ସମ୍ବନ୍ଧ ଲାଗି ରହୁ ନିରନ୍ତର ।
ବ୍ରହ୍ମ-ନିଷ୍ଠ ମୁହିଁ ହୋଇ ତାଙ୍କ କୃପା ପ୍ରାପ୍ତ
ବ୍ରହ୍ମତତ୍ତ୍ୱ ମୋ ହୃଦୟେ ହେଉ ପ୍ରତିଭାତ ।
ପ୍ରତିଭାତ ହେଉଥାଉ ମୋହରି ଅନ୍ତରେ,
ଏ ଉପନିଷଦ ଗୂଢ଼ ତତ୍ତ୍ୱ ନିରନ୍ତରେ ।

## ଏକତ୍ୱର ଜ୍ଞାନ :

ମାୟା, ଅଜ୍ଞାନତା ଛଡ଼ା ଆଉ କିଛି ନୁହେଁ,
ଏକତ୍ୱର-ଜ୍ଞାନ ତେଣୁ ଏ ବେଦାନ୍ତ କୁହେ ।
କେବଳ ଅଜ୍ଞାନୁ ଜାତ ଆମ ଦୁଃଖ ରାଶି,
ମନକୁ ବହୁତ୍ୱ ଭାବ ଯେଣୁ ଅଛି ଗ୍ରାସି ।
ଜଗତର ପ୍ରତି ବସ୍ତୁ ବ୍ୟକ୍ତି ଅବା ପ୍ରାଣୀ
ଭିନ୍ନ ଭିନ୍ନ ରୂପ ବୋଲି ଆମେ ଅଛୁ ଜାଣି ।
ଏ ଭେଦ ଦିଶଇ ସିନା ଉପରେ ଉପରେ
ଏକତ୍ୱ ବିରାଜେ କିନ୍ତୁ ପ୍ରତି ଅନ୍ତଃସ୍ଥଳେ ।
ଆମରି ନୟନେ ହୁଏ ଯାହା ପ୍ରତିଭାତ
ସକଳ ତ ବ୍ରହ୍ମ-ଭିତ୍ତି ପରେ ଆତଯାତ ।

ଏକ ସୂର୍ଯ୍ୟ ଯେହ୍ନେ କରେ ଜଗତ ପ୍ରକାଶ
ସତ୍ୟ ଭିତ୍ତି ପରେ ତେହ୍ନେ ଜଗତ ବିକାସ ।
ପଥରର ମୂର୍ତ୍ତି ଏକ ନୟନେ ନିରେଖ,
ସେ ମୂର୍ତ୍ତିର ମୁହଁ ନାକ ଆଖି କାନ ବେକ,
ହାତ ଗୋଡ଼ ଆଣ୍ଠୁ ଗଣ୍ଠି, ବେଶ ପରିଧାନ,
ମୁକୁଟ ଓ ମୁକୁଟରେ ଖଞ୍ଜା ରତ୍ନମାନ,
ଅଟ୍ଟହାସ ମଧୁହାସ ସବୁ ପଥରର
ତେସନେ ତ ସଂସାରର ସର୍ଜନା ସକଳ ।
ଏକ ସ୍ରଷ୍ଟା, ଏକ ସତ୍ତା, ସେ ଏକ ଅଟନ୍ତି
ଏ ସୃଷ୍ଟି ସେ ବ୍ରହ୍ମଙ୍କର ମାନସ ଶକତି ।
ଏହି ଏକତ୍ୱକୁ ଯିଏ ଦେଖିଛି ନୟନେ,
ଦୁଃଖ ଶୋକ ମୋହ ତାକୁ ଘାରିବ କେସନେ ?
ତେଣୁ ବ୍ରହ୍ମ ବିରାଜିତ ଅଖିଳ ଭୁବନେ,
ମାୟାରେ ଭିନ୍ନତା ସିନା ଦିଶଇ ନୟନେ ।

## ସକଳ ବସ୍ତୁରେ ବ୍ରହ୍ମ ଦର୍ଶନ :

ସତ୍ୟକୁ ଜାଣିବା ପାଇଁ ଆମେ କଲେ ମନ,
ଅସତ୍ୟକୁ ଛାଡ଼ିଦେବା ଅତି ପ୍ରୟୋଜନ ।
ଭଲକୁ ବାଛିବା ଯେବେ ମନ୍ଦ ଦେବା କାଢ଼ି
ଜୀବନ ଖୋଜିଲେ ଦେବା ମୃତ୍ୟୁ ଚିନ୍ତା ଛାଡ଼ି ।
ଇନ୍ଦ୍ରିୟଗୋଚର ବସ୍ତୁ ଯେତେ ଏ ସଂସାରେ
ସବୁକୁ ଛାଡ଼ିଲେ ଅବା ସତ୍ୟ ମିଳିପାରେ ।
ବେଦାନ୍ତ ମୀମାଂସା ଏହି ଅତି ସୁଶୋଭନ,
"ଜଗତକୁ ବ୍ରହ୍ମ ରୂପେ କର ଦରଶନ ।"
ଜଗତକୁ ଜାଣୁ ଆମେ ଯେପରି ଭାବରେ
ଅବା ପ୍ରତିଭାତ ହୁଏ ତାହା ଯେ ରୂପରେ,

ମନରୁ ତାହାକୁ ତ୍ୟାଗ କରିବା ଯେ କ୍ଷଣେ
ପ୍ରକୃତ ଜଗତ ରୂପ ନାଚିବ ନୟନେ ।
ଏ ଜଗତ ବ୍ରହ୍ମ ବିନା କିଛି ନୁହେଁ ଆନ,
"ଈଶାବାସ୍ୟ" ଆଦ୍ୟ ମନ୍ତ୍ର ତାହାରି ପ୍ରମାଣ ।

ଦୃଶ୍ୟମୟ ବସ୍ତୁ ଯେତେ ଜଗତ ସହିତ
ବ୍ରହ୍ମ ଭିତ୍ତି ପରେ ସବୁ ନିତ୍ୟ ଆଧାରିତ ।
ଯେସନେ ଲହଡି ଢେଉ ବୁଦ୍‌ବୁଦ ଭଉଁରୀ
ଅନନ୍ତ ସାଗର ବୁକେ ରହିଥାଏ ପୂରି;
ଏ ସବୁ ସମୁଦ୍ର ଛଡ଼ା କିଛି ନୁହେଁ ଆଉ
ଜଳର ସେ ଭିନ୍ନ ରୂପ ଜାଣିବାକୁ ପାଉ ।
ସମୁଦ୍ର ବିହୁନେ ନାହିଁ ଲଡ଼ଡିର ସ୍ଥିତି
ଲହଡି ତ ସିନ୍ଧୁ-ବଳ-ବିକ୍ରମ ଯେମିତି ।
ତେସନେ ସଂସାରେ ଅଛି ଯେତେ ଗୁଣ ରୂପ,
ନିଶ୍ଚିତ ଜାଣିବ ସବୁ ବ୍ରହ୍ମ ପ୍ରତିରୂପ ।

ଏହି ବ୍ରହ୍ମ-ଅନୁଭୂତି ହୋଇବ କେସନେ
ସେ ପଥ ଦେଖାଇଛନ୍ତି ଆର୍ଯ୍ୟଋଷି ଗଣେ ।
ବସ୍ତୁମୟ ଦିଶେ ଯାହା ନୟନେ ଆମରି,
ସବୁରେ ଈଶ୍ୱର-ସତ୍ତା ରହିଅଛି ଭରି ।
ସମାନ ଭାବରେ ସେହି ବ୍ୟାପ୍ତ ସବୁଠାରେ
ଈଶ୍ୱରଙ୍କୁ ଛାଡ଼ି କିଛି ନାହିଁ ଏ ସଂସାରେ ।
ପ୍ରତି ବସ୍ତୁ ମଧ୍ୟେ କରି ଈଶ୍ୱର ଦର୍ଶନ,
ଆସକ୍ତିର ଜଗତକୁ କର ବିସର୍ଜନ ।
ଧନ ଦାରା ସୁତେ କର ନାହିଁ ଅବହେଳା,
ବରଂ ଭାବ ସେ ସକଳ ପ୍ରଭୁଙ୍କର ଖେଳା ।
ପାପ ପାପୀ ଭଲ ମନ୍ଦ ସବୁରି ଭିତରେ
ଜୀବନରେ ମରଣରେ ସେ ପ୍ରଭୁ ବିହରେ ।

ମନ ଅଭିଳାଷୀ ବସ୍ତୁ ବିଷୟ ବାସନା,
ହୃଦୟେ ରଖିବା ପାଇଁ କେ କରୁନି ମନା ।
ସବୁ ଉପଭୋଗ କର ଯାହା ହୁଏ ମନ
କିନ୍ତୁ ପ୍ରତ୍ୟେକରେ ସତ୍ୟ କର ଦରଶନ ।
ଏ ଧନ କାହାରି ନୁହଁ, ଈଶ୍ୱର ମାଲିକ
ପଦାର୍ଥେ ପ୍ରଭୁତ୍ୱ ଭାବ କେବଳ ଅଳୀକ ।
ତୁମେ କେହି ନୁହଁ, ଅବା ମୁଁ ନୁହଁଇ କେହି,
କେହି ମଧ କେହି ନୁହଁ, ସବୁ ହିଁ ତ ସେହି ।
ଈଶ୍ୱର ତୁମରି ଭୋଗ୍ୟ ଧନରେ ଅଛନ୍ତି,
ତୁମ ମନ ବାସନାରେ ସେ ତ ନିବସନ୍ତି ।
ତୁମ ଲୁଗା, ଗହଣାରେ, କଥାରେ କାମରେ
ପ୍ରତି ରଙ୍ଗେ ଢ଼ଙ୍ଗେ ତାଙ୍କୁ ବସାଅ ସତ୍ୱରେ ।
ତେବେ ଜଗତର ରୂପ କ୍ଷଣେ ବଦଳିବ,
ଦୁଃଖର ସଂସାର ତୁମ ସ୍ୱର୍ଗ ପାଲଟିବ ।।

ଏ ଜଗତ ପ୍ରଭୁଙ୍କର ଚାରୁ ଚିତ୍ରପଟ୍ଟ,
ବାସନା ନ ରଖି ଭୋଗ କର ଏ ସମସ୍ତ ।
କିଣା ବିକା ଭାବ ଅବା କେତେ ଲାଭ କ୍ଷତି,
କର୍ତ୍ତୃଭାବେ ଚିତ୍ରପଟ୍ଟ କେ ଭୋଗ କରନ୍ତି ?
ଈଶ୍ୱର ମହାନ କବି, ସେ କବି ପୁରାଣ,
କବିତା ତାଙ୍କର ସାରା ଏ ଜଗତ ଜାଣ,
ନାନା ଶ୍ଳୋକ, ନାନା ଛନ୍ଦ ତାଲେ ପ୍ରକାଶିତ
ଅନନ୍ତ ଆନନ୍ଦୋଲ୍ଲାସେ ଏହି ଯେ ଲିଖିତ ।
କେବଳ ବାସନାତ୍ୟାଗୀ ହୁଏ ଯେଉଁ ଜନ,
ସେ ବିଶ୍ୱ-କବିତା-ରସ କରେ ଆସ୍ୱାଦନ ।
ଜଗତକୁ ବ୍ରହ୍ମମୟ କେବଳ ସେ ଦେଖେ,
ପ୍ରତି ବସ୍ତୁ ପଦାର୍ଥରେ ବ୍ରହ୍ମଙ୍କୁ ଯେ ଲେଖେ ।

ଜଗତ ଓ ବ୍ରହ୍ମ ଏକ-ଏହି ସତ୍ୟବାଣୀ
ଏକାଠି ବେନିକୁ କିନ୍ତୁ କେ ପାରେନା ଜାଣି ।
ଦେଖ, ଶିଳା ପରେ ଏକ ପ୍ରତିମା ଖୋଦିତ,
ତାର ଛବି ଦେଖି ତୁମେ ହେଲ ବିମୋହିତ ।
ସେତେବେଳେ ଶିଳା ପ୍ରତି ପଡ଼େନା ନଜର,
କେବଳ ମୂର୍ତ୍ତିରେ ତୁମ ନିମଗ୍ନେ ଅନ୍ତର ।
ଖିଆଲ ତୁମର କିନ୍ତୁ ଶିଳାରେ ରହିଲେ
ମୂର୍ତ୍ତି କଥା ଆଉ ମନେ ନ ପଡ଼ଇ ତିଳେ ।
ତେସନେ ଏ ଜଗତରେ ଆମେ ଥିଲେ ମଜି,
ମନରୁ ଆମର ବ୍ରହ୍ମ ଯାଇଥାନ୍ତି ହଜି ।
ଥରେ କିନ୍ତୁ ହୋଇଗଲେ ବ୍ରହ୍ମ ଦରଶନ
ଜଗତ ଲାଗିବ ଯେହ୍ନେ ଅଳୀକ ସପନ ।

ଦୁଃଖଚକ୍ର ଉର୍ଦ୍ଧ୍ୱେ ଯିବା ପାଇଁ କଲେ ମନ,
ଭିନ୍ନ ରୂପେ ଜଗତକୁ କର ଦରଶନ ।
ଜଗତ ଦିଶୁଚି ଯେହ୍ନେ ସେ ରୂପେ ଦେଖିଲେ
ଏ ଜଗତୁ ଅସରନ୍ତି ଦୁଃଖ ସିନା ମିଳେ ।
ଏ ଜଗତ ଅତୀତରେ ଆଉ କିଛି ଅଛି,
ଇନ୍ଦ୍ରିୟର ଜ୍ଞାନ ତହିଁ ନ ପାରେ ପହଞ୍ଚି ।
ଏ ଦେଖା ଜଗତ ଠାରୁ ଅଦେଖା ଜଗତ,
ଅନନ୍ତ ଆକାରେ ବିରାଜିତ ଅବିରତ ।
ସେହି ତ 'ଈଶ୍ୱର' 'ଆଲ୍ଲା' 'ବ୍ରହ୍ମ' 'ଭଗବାନ'
ତହିଁ ଦୁଃଖ ଶୋକ ନାହିଁ କିଞ୍ଚିତ ପ୍ରମାଣ ।
ସେହି ସତ୍ୟ ଅବିନାଶୀ ନିତ୍ୟ ସନାତନ
ତାଙ୍କୁ ଜାଣିବାକୁ ଯୋଗ ସାଧେ ଯୋଗୀଜନ ।

# ପ୍ରଥମ ଖଣ୍ଡ

**ମନ୍ତ୍ର ଏକ :**

### ପ୍ରାଣ ଓ ଇନ୍ଦ୍ରିୟର ପରିଚାଳକ-"ବ୍ରହ୍ମ"

*ଓଁ କେନେଷିତଂ ପତତି ପ୍ରେଷିତଂ ମନଃ*
*କେନ ପ୍ରାଣଃ ପ୍ରଥମଃ ପ୍ରୈତି ଯୁକ୍ତଃ*
*କେନେଷିତାଂ ବାଚମିମାଂ ବଦନ୍ତି*
*ଚକ୍ଷୁଃ ଶ୍ରୋତ୍ରଂ କ ଉ ଦେବୋ ଯୁନକ୍ତି ॥*

**କାହାର ଇଚ୍ଛାରେ :**

କାହାର ଇଚ୍ଛାରେ ହୋଇ ଏ ମନ ପ୍ରେରିତ
ତାର ନିଜ ବିଷୟକୁ ହୁଅଇ ଧାବିତ ?
ପ୍ରାଣ ବାୟୁ କାହା ଦ୍ୱାରା ହୋଇ ନିୟୋଜିତ
ନିଜ କାର୍ଯ୍ୟେ ଚଳିବାକୁ ହୁଅଇ ଉପସ୍ଥିତ ?
କାହାର ଇଚ୍ଛାରେ ପୁଣି ହୋଇ ପ୍ରଣୋଦିତ
ଲୋକଙ୍କ ମୁଖରେ ବାକ୍ୟ ହୁଏ ଉଚ୍ଚାରିତ ?
ସେ କେଉଁ ଦେବତା ଅବା ଏଇ ଚକ୍ଷୁ କର୍ଣ୍ଣେ
ସ୍ୱ ବିଷୟେ କରିଥାନ୍ତି ଯୁକ୍ତ ଅନୁକ୍ଷଣେ ?

**ଗୁରୁଙ୍କ** ସମୀପେ ଶିଷ୍ୟ ହୋଇ ଉପଗତ
ପଚାରନ୍ତି ସବିନୟେ ପରମାତ୍ମା-ତତ୍ତ୍ୱ ।
ପଚାରନ୍ତି ବିଶ୍ୱ-ପ୍ରାଣ-ଶକ୍ତିର କାରଣ
ଜୀବ ଦେହେ କେ କରାଏ କର୍ମ ସମ୍ପାଦନ ।
ସତ୍ୟାନ୍ୱେଷୀ ଶିଷ୍ୟ ପୁଣି ପଚାରି ବସନ୍ତି
ହେ ଗୁରୁ ପ୍ରକୃତ କିଏ ଦେଖନ୍ତି ଶୁଣନ୍ତି ?
ସମସ୍ତ ଶରୀରଧାରୀ ପ୍ରାଣୀଙ୍କୁ ଜଗତେ
ପ୍ରବୃତ୍ତ କରାଏ କିଏ କର୍ମେ ଅବିରତେ ?

ଏହି ମନ୍ତ୍ରେ ମନ ପ୍ରାଣ ବାଣୀ ଚକ୍ଷୁ କର୍ଣ୍ଣ
ଏ ପଞ୍ଚ ଅଙ୍ଗର କରାହୋଇଛି ବର୍ଣ୍ଣନ ।
ଏ ପାଞ୍ଚରୁ ଚକ୍ଷୁ କର୍ଣ୍ଣ ଜ୍ଞାନେନ୍ଦ୍ରିୟେ ଗଣା,
ବାଣୀ କର୍ମେନ୍ଦ୍ରିୟ, ମନ କରେ ସଂଯୋଜନା ।
ପ୍ରାଣକୁ ପ୍ରଥମ କହି ଋଷି ଏ ମନ୍ତ୍ରରେ
ତାହାରି ଶ୍ରେଷ୍ଠତ୍ୱ ଗାଇଛନ୍ତି ଯଥାର୍ଥରେ ।
ପ୍ରାଣ ବିନା ଶରୀରର ନାହିଁ କିଛି ସ୍ଥିତି
ସବୁ ଅବସ୍ଥାରେ ପ୍ରାଣ ସକ୍ରିୟ ସେମିତି ।
ଶୋଇବା ସମୟେ ଦଶ ଇନ୍ଦ୍ରିୟ ଓ ମନ,
ଶରୀର ସହିତେ କରି ଥାଆନ୍ତି ଶୟନ ।
କିନ୍ତୁ ସେତେବେଳେ କ୍ରିୟାଶୀଳ ଥାଏ ପ୍ରାଣ,
ଜାଗରଣେ ସ୍ୱପ୍ନେ ଆଉ ସୁଷୁପ୍ତିରେ ଜାଣ ।
ଏ ବିଶ୍ୱ ପ୍ରପଞ୍ଚମୟ ଇନ୍ଦ୍ରିୟ ବିଦିତ
କିନ୍ତୁ କେ ଅଛି କି ପଛେ ଯେ ଇନ୍ଦ୍ରିୟାତୀତ ?
ଅଛି କି ଅଦୃଶ୍ୟ କେଉଁ କାରଣ ଜଗତ
ଯେ କରାଏ ସୃଷ୍ଟି କ୍ରିୟାଶୀଳ ଅବିରତ ?

## ପ୍ରାଣ ମନ ଇନ୍ଦ୍ରିୟଙ୍କୁ କିଏ କାମରେ ଲଗାଏ :

ଏ ଦେହର ମନ ପ୍ରାଣ ଇନ୍ଦ୍ରିୟ ନିକରେ,
ନିଜ ନିଜ କାର୍ଯ୍ୟେ ତାଙ୍କୁ କେ ନିଯୁକ୍ତ କରେ ?
କେ ପରିଚାଳକ ଅବା କର୍ତ୍ତା ହୋଇ କିଏ
ମନ ପ୍ରାଣ ଇନ୍ଦ୍ରିୟଙ୍କୁ ନିର୍ଦ୍ଦେଶନା ଦିଏ ?
ଏ ମନ କି ସର୍ବବ୍ୟାପୀ ସର୍ବ ଶକ୍ତିଶାଳୀ
ସେ କରାଏ ଅବା ପାଇ ପ୍ରେରଣା କାହାରି ?
କିଏ ସେ ପଠାଇଥାନ୍ତି ଜୀବନ ଶକତି
ଯା' ବିନା ସମ୍ଭବ ନୁହେଁ କା'ର ସ୍ଥିତି ଗତି ।

ସମସ୍ତେ ଜାଣନ୍ତି ମନ ସ୍ୱଭାବେ ସ୍ୱାଧୀନ
ସେ ପୁଣି ହୋଇବ ଆଉ କାହାର ଅଧୀନ ?
ଏ ମନ କରଇ ଚିନ୍ତା ଏ ଜଗତ ସାରା,
ସେହି କି ଇନ୍ଦ୍ରିୟଗଣେ ଦିଅଇ ଇସାରା ?
ନତୁବା ଇନ୍ଦ୍ରିୟ-ମନ-ବୁଦ୍ଧି ସମନ୍ୱିତ-
ଏ ଶରୀର ଅବା ଦେଇ ପାରଇ ଇଙ୍ଗିତ ।
କିଏ ପ୍ରକୃତରେ ସେହି ଦେହଂ ମଧ୍ୟେ ରହି,
ଏମାନଙ୍କୁ ନିଜ କର୍ମେ ନିଯୁକ୍ତ କରଇ ?

ଯେ ଶିଷ୍ୟେ ସାଧନ୍ତି ବିଦ୍ୟା ନିବିଡ଼ ଅରଣ୍ୟେ,
ସେ ଇତର ପ୍ରାୟେ ଅଜ୍ଞ ହୋଇବେ କେସନେ ?
ଶରୀରକୁ ଇନ୍ଦ୍ରିୟକୁ ଆତ୍ମା ବୋଲି ଜାଣି,
ଜଗତେ ଚଳନ୍ତି ସିନା କେବଳ ଅଜ୍ଞାନୀ ।
ନୁହନ୍ତି ଏ ପ୍ରଶ୍ନକର୍ତ୍ତା ତାଙ୍କ ପରି କେହି,
କିଛି ଆତ୍ମ-ତତ୍ତ୍ୱ ଜ୍ଞାନ ଲଭିଥିବେ ସେହି ।
ସେ ତ ଜାଣିଥିବେ ଦେହ ଇନ୍ଦ୍ରିୟ ଓ ମନ,
ବୁଦ୍ଧି ପ୍ରାଣ କେ ନୁହନ୍ତି କେବେ ସଚେତନ ।
ସକଳେ ତ ଜଡ଼, କେହ୍ନେ ଜ୍ଞାନ ପ୍ରକାଶିବେ,
ଅନ୍ୟକୁ କିପରି ସେହି ଚଳାଇ ପାରିବେ ?
ଏହାଙ୍କ ପ୍ରେରକ ଆଉ ବୋଧକ ଭାବରେ
ଅନ୍ୟ କେ ପୁରୁଷ ଅଛି ଚେତନ ରୂପରେ ?
ସେ ପୁରୁଷ କିଏ ତାଙ୍କୁ ଜାଣିବା ସକାଶେ,
ସତ୍ୟାନ୍ୱେଷୀ ଶିଷ୍ୟ ବସି ଗୁରୁ ପାଦପାଶେ,
ପ୍ରଶ୍ନ ପଚାରନ୍ତି ପ୍ରାଣ ଆବେଗ ସହିତ
ସକଳ ସଂଶୟ ଗୁରୁ ପେଡିବେ ନିଶ୍ଚିତ ॥

**ମନ୍ତ୍ର ଦୁଇ :**

**ଶ୍ରୋତ୍ରସ୍ୟ ଶ୍ରୋତ୍ରଂ ମନସୋ ମନୋ ଯଦ୍**
**ବାଚୋ ହ ବାଚଂ ସ ଉ ପ୍ରାଣସ୍ୟ ପ୍ରାଣଃ ।**
**ଚକ୍ଷୁଷଶ୍ଚକ୍ଷୁରତିମୁଚ୍ୟ ଧୀରାଃ**
**ପ୍ରେତ୍ୟାସ୍ମାଲ୍ଲୋକାଦମୃତା ଭବନ୍ତି ॥**

## ସେ ତ କର୍ଣ୍ଣର କର୍ଣ୍ଣ, ମନର ମନ ....... :

ସେ ବ୍ରହ୍ମ କର୍ଣ୍ଣର କର୍ଣ୍ଣ, ମନର ବି ମନ
ବାକ୍ୟର ସେ ବାକ୍ୟ ପୁଣି ପ୍ରାଣର ବି ପ୍ରାଣ ।
ଚକ୍ଷୁର ସେ ଚକ୍ଷୁ; ତେଣୁ ବିବେକୀ ସୁଜାଣ
ଇନ୍ଦ୍ରିୟ ସକଳୁ ତେଜି ଆତ୍ମ-ବୁଦ୍ଧି ଜ୍ଞାନ,
ସଂସାର ବିଷୟୁଁ ହୋଇ ସଂପୂର୍ଣ୍ଣ ନିବୃତ୍ତ
ଏ ଜୀବନେ ଲାଭ କରି ଥାଆନ୍ତି ଅମୃତ ॥

**ଶିଷ୍ୟଙ୍କ** ପ୍ରଶ୍ନରେ ଗୁରୁ କହିଲେ, "ସେ ବ୍ରହ୍ମ "
"କର୍ଣ୍ଣର ସେ କର୍ଣ୍ଣ ଆଉ ମନର ସେ ମନ ।"
ବ୍ରହ୍ମଙ୍କୁ ନିର୍ଦ୍ଦିଷ୍ଟ ଭାବେ ବୁଝାଇ କହିବା,
ଅବା କେଉଁ ରୂପ ନାମେ ତାଙ୍କୁ ବଖାଣିବା,
ସମ୍ଭବ ନୁହଁଇ ଯେଣୁ କାହାରି ପକ୍ଷରେ
କହିଲେ ଶିଷ୍ୟଙ୍କୁ ତେଣୁ ଗୁରୁ ଏ ଭାବରେ ।
ବ୍ରହ୍ମଙ୍କର ବ୍ୟାଖ୍ୟା ଅବା ସ୍ୱରୂପ ବର୍ଣ୍ଣନା
କେ କରି ବସିଲେ ହେବ ଉଦ୍‌ଭଟ କଳ୍ପନା ।
ସେ ପାଇଁ ସଙ୍କେତ ପୂର୍ଣ୍ଣ ଭାଷା ବ୍ୟବହାରେ,
"କର୍ଣ୍ଣର ସେ କର୍ଣ୍ଣ" - ବୋଲି କହନ୍ତି ଏଠାରେ ।

ମନ କର୍ଣ୍ଣ ଚକ୍ଷୁ କଥା ଆମକୁ ତ ଜଣା,
ଆଉ ଯା ହୋଇଲା କୁହା ସେ ସବୁ ସୂଚନା ।
ଯାହାକୁ ଜାଣୁଚେ ଆମେ ଆମ ଇନ୍ଦ୍ରିୟରେ
ବ୍ରହ୍ମ ତା' କାରଣ ଶକ୍ତି ଅଛନ୍ତି ପଛରେ ।
କେବଳ ଏ ସୂଚନାରୁ ଯିଏ ହେଲେ କେହି
ବ୍ରହ୍ମଙ୍କୁ ଜାଣିବ ନିଜେ ଯୋଗ ଧ୍ୟାନ ଦେଇ ।
ଧ୍ୟାନେ ବସି କିଏ ଯଦି ଅନ୍ତର ମନ୍ଥିବ,
ବ୍ରହ୍ମ-ନବନୀତ ଜାଣ ତହୁଁ ବାହାରିବ ।

''କର୍ଣ୍ଣର ସେ କର୍ଣ୍ଣ'' ବୋଲି କହି ଏ ପ୍ରକାରେ
ସତେ କି ଶିଷ୍ୟଙ୍କୁ ଗୁରୁ ଟାଣନ୍ତି ଏଠାରେ
ସ୍ଥୂଳ ଇନ୍ଦ୍ରିୟରୁ ସୂକ୍ଷ୍ମ ଜଗତେ ଯିବାକୁ
ଯହିଁ ବ୍ରହ୍ମ ଦରଶନ ମିଳି ପାରେ ତାଙ୍କୁ ।
ସତ୍ୟାନ୍ୱେଷୀ ଶିଷ୍ୟ ଯେବେ କରିବେ ସାଧନା,
ତେବେ ସେ ଛାଡ଼ିବେ ପୂର୍ବ ସଞ୍ଚିତ ଧାରଣା ।
ଚକ୍ଷୁ କର୍ଣ୍ଣ ନାସା ଆଦି ସକଳ ଇନ୍ଦ୍ରିୟେ
ନିଜେ ନିଜ କାର୍ଯ୍ୟ କରି ନ ପାରନ୍ତି କିଏ ।
ବ୍ରହ୍ମଙ୍କ ଶକ୍ତିରେ ମାତ୍ର ହୋଇ ପ୍ରଣୋଦିତ,
ଇନ୍ଦ୍ରିୟେ ସ୍ୱକାର୍ଯ୍ୟ ପାଇଁ ହୁଅନ୍ତି ଧାବିତ ।

## ମନ ବୁଦ୍ଧି ଇନ୍ଦ୍ରିୟ କିଛି ନୁହଁ :

ତେଣୁ ଇନ୍ଦ୍ରିୟଙ୍କୁ ଛାଡି ଅନ୍ତର ମନ୍ଥିଲେ
ବ୍ରହ୍ମ ଦରଶନ ଅବା ହୋଇପାରେ ତିଳେ ।
ଇନ୍ଦ୍ରିୟ ସବୁରେ କରି ଆତ୍ମ-ବୁଦ୍ଧି ଜ୍ଞାନ
ଜୀବନେ ଆସଇ ରୋଗ ଶୋକ ବ୍ୟାଧିମାନ ।
ଏଥିରୁ ଉର୍ଦ୍ଧ୍ୱକୁ ଉଠି ପାରିଲେ କେବଳ
ସାଧକେ ପାରିବେ ଲଭି ଅମୃତ ସୁଫଳ ।

ଏ ସ୍ଥୂଳ ଜଗତେ ଘଟେ କଥଣ କେଉଁଠି
ସ୍ଥୂଳ ଇନ୍ଦ୍ରିୟରେ ତାର ହୁଏ ଅନୁଭୂତି ।
ତହିଁ ଦୁଃଖୀ ଜୀବ ବୋଲି ନିଜକୁ ସେ ଜାଣେ
ଅସୁମାରୀ ବ୍ୟଥା ଭରି ଉଠଇ ପରାଣେ ।
କିନ୍ତୁ ଶ୍ରୁତି ବାକ୍ୟେ ଆମେ ହେଲେ ଅନୁଗାମୀ
ଜାଣିବା ଜୀବନ ଉତ୍ସ ସିନା ଅନ୍ତର୍ଯ୍ୟାମୀ ।
'ମନର ମନ'କୁ ଆମେ ଥରେ ଗଲେ ଜାଣି
ଏ ସଂସାର ଦୁଃଖ ଆଉ ଭୋଗ କରିବାନି ।
ବ୍ରହ୍ମ ବା ସତ୍ୟଙ୍କ କଥା ଚିନ୍ତା କଲେ ମନେ
ସ୍ୱତଃସ୍ଫୂର୍ତ୍ତ ଶିହରଣ ଜାଗେ ଅପଘନେ ।
କିପରି ସେ, ଅନୁଭୂତି କେସନେ ତାଙ୍କରି
ଚିନ୍ତା କଲେ ତନୁ ମନ ଉଠଇ ଶିହରି ।
ତାଙ୍କ ଉପଲବ୍ଧି ସତେ ହୋଇବ ଜୀବନେ
ସତେ ଜୀବ ଧନ୍ୟ ହେବ ତାଙ୍କ କୃପାକଣେ ?
ସେ ହୃଦ-ରତନ, ହୃଦେ ବିଳସନ୍ତି ସେହି
କେ ପାଇନି ତାଙ୍କୁ କରି ବୁଦ୍ଧିର ବଢ଼େଇ ।
ଅଗମ ଦୁର୍ଗମ ସେହି ପଥ, ବଡ ଲମ୍ବା,
ହଟାଇଲେ ଅହମିକା ସେ ମିଳିବେ ଅବା ।।

ପ୍ରଥମ ମନ୍ତ୍ରେ ଯେ ପ୍ରଶ୍ନ ପଚରା ଯାଇଛି,
ଏ କେତେକ ମନ୍ତ୍ରେ ତାର ଉତ୍ତର ରହିଛି ।
ବ୍ରହ୍ମଙ୍କୁ "ଶ୍ରୋତ୍ରର ଶ୍ରୋତ୍ର" କହି ମୁନିବର
ସଙ୍କେତେ ଶିଷ୍ୟଙ୍କୁ ଏଠି ଦିଅନ୍ତି ଉତ୍ତର ।
ଶ୍ରୋତ୍ର ବା ଶ୍ରବଣେନ୍ଦ୍ରିୟ ଶୁଣିବା ନିମନ୍ତେ
ଏକ ଯନ୍ତ୍ର ମାତ୍ର ତାହା ଏ ଶରୀରଗତେ
କର୍ଣ୍ଣରେ ବାଜିଲେ ବାହ୍ୟ ଶବ୍ଦର ସ୍ପନ୍ଦନ
କର୍ଣ୍ଣପଥ ଦେଇ ଆମେ କରୁ ତା' ଶ୍ରବଣ ।

କିନ୍ତୁ କର୍ଣ୍ଣେନ୍ଦ୍ରିୟ ଜଡ଼, ନୁହଇଁ ଚେତନ
ଜାଣିବା ଶକତି ସିଏ ପାଇବ କେସନ ?

କଣ୍ୱାଶ୍ରମେ ଏକାକିନୀ ତାପସ କୁମାରୀ,
ବସିଥିଲେ ଯେବେ ମନେ ନୃପ ପ୍ରୀତି ଭାଳି
ତେବେ ତାଙ୍କ ଅଙ୍ଗେ ଥିଲା ଦୁଇ ସୁସ୍ଥ କର୍ଣ୍ଣ
କିନ୍ତୁ ନ ଶୁଭିଲା କ୍ରୁଦ୍ଧ-ମୁନିଙ୍କ ବଚନ ।
ସେହିପରି ଆନମନା ହୋଇ ପାଶେ ଥାଇ
ପାଖ ଲୋକ କଥା ଶୁଣି ନ ପାରୁ କିମ୍ପାଇଁ ?
କର୍ଣ୍ଣେନ୍ଦ୍ରିୟ ନୁହେଁ ଯେଣୁ ଜ୍ଞାନ ପ୍ରକାଶକ
ତେଣୁ କର୍ଣ୍ଣେ ଶୁଣାଯିବା କଥା ଭ୍ରମାତ୍ମକ ।

## ଆତ୍ମ-ଜ୍ୟୋତିହିଁ ସବୁ :

ଅନ୍ତରର ଆତ୍ମ-ଜ୍ୟୋତି କର୍ଣ୍ଣମୂଳେ ରହି,
କର୍ଣ୍ଣର ବିଷୟେ କ୍ଷଣେ ପ୍ରକାଶ କରଇ ।
ଏ ଜ୍ୟୋତି ଶ୍ରୋତ୍ରର ଜ୍ଞାନ ପ୍ରକାଶକ ଯେଣୁ
ଆତ୍ମାଙ୍କୁ "ଶ୍ରୋତ୍ରର ଶ୍ରୋତ୍ର" କୁହାଯାଏ ତେଣୁ ।
ଏ ଆତ୍ମା "ମନର ମନ" ଅଟନ୍ତି ସେପରି
ଆତ୍ମା ବିନା ମନ କିଛି ନ ପାରଇ କରି ।
ଆତ୍ମ-ଜ୍ୟୋତି ସାହାଯ୍ୟରେ ପ୍ରାଣବୃତ୍ତି କର୍ମ
ଜୀବ ଦେହେ ଅବିରତେ ଚାଳିବାରେ କ୍ଷମ ।
"ପ୍ରାଣର ପ୍ରାଣ" ସେ ବୋଲି ସେ ପାଇଁ କଥିତ
ସକଳ ଇନ୍ଦ୍ରିୟେ ଆତ୍ମା ଲାଗି ପ୍ରଚୋଦିତ ।

ମନ-ବୁଦ୍ଧି-ଇନ୍ଦ୍ରିୟର ଦେହକୁ ଅଜ୍ଞାନୀ
ଜ୍ଞାନ-ପ୍ରକାଶକ-ଆତ୍ମା ବୋଲି ଥାନ୍ତି ଜାଣି ।
ତେଣୁ ମାୟା ମୋହେ ଛନ୍ଦି ହୋଇ ଏହି ଜନେ,
ଅସୀମ ଯାତନା ଭୋଗ କରନ୍ତି ଜୀବନେ ।

ଅନାତ୍ମ ଦେହାଦି ତୁଲେ ସେ ହୋଇ ଆସକ୍ତ,
ଭୁଲନ୍ତି ଆତ୍ମାଙ୍କୁ ଏହି ନିର୍ବୋଧେ ସତତ ।
ଅଳୀକକୁ ସତ୍ୟ ମଣି ଏ ସଂସାରୀ ଜନ
ମରୁ-ମରୀଚିକା ଦେଖି ରଚଇ ସପନ ।
ବେଳାଭୂମି ବାଲିଘର ମିଳାଏ ଯେପରି
ସବୁ ସ୍ୱପ୍ନ ଚୂରମାର କ୍ଷଣେ ସେହିପରି ।
ଏହି ତ ଅଭାଗା ଜୀବ କରେ ନିତି ଭୋଗ
ଅକଥ୍ୟ କଷଣ ଶୋକ ବ୍ୟାଧି ଜରା ରୋଗ ।

କିନ୍ତୁ ଦିବ୍ୟଜ୍ଞାନ ହୃଦେ ହୋଇଲେ ଉଦିତ
ସତ୍ୟ ହୋଇଥାନ୍ତି ନେତ୍ର ପଥେ ଉଦ୍ଭାସିତ ।
ସେହି ସୁଖଧାମ, ତହୁଁ ଝରଇ କରୁଣା
ସକଳ ହତାଶା ଦୁଃଖ କ୍ଷଣେ ହୁଏ ଚୂନା ।
ଦେଖାଇ ଦିଅନ୍ତି ଗୁରୁ କେବଳ ସେ ପଥ
ଜଣେ ନିଜ ସାଧନାରେ ଲଭିପାରେ ସତ୍ୟ ।

ଚରାଚର ଦୃଶ୍ୟ ବସ୍ତୁ ଯେତେ ଏ ଜଗତେ
ଆମ ଦୃଷ୍ଟି ପଥାରୂଢ଼ ହୁଅଇ ନିରତେ,
ସେହି ବସ୍ତୁ ଆଉ ସେହି ବସ୍ତୁ ଅଭ୍ୟନ୍ତରେ
ଯେଉଁ ଦିବ୍ୟ ସତ୍ତା ବିରାଜିତ ନିରନ୍ତରେ,
ଉଭୟ ଭିତରେ ଅଛି ଯେତେ ବ୍ୟବଧାନ
ତାହାକୁ ପାରିଲେ କରି ହୃଦେ ଅନୁମାନ,
ତେବେ ଏ ଶରୀର ଧରି ଆମେ କଦାଚନ,
ଭୋଗିବାନି ଜୀବନରେ ନିଇତି କଷଣ ।
କ୍ଷଣିକ ବରବେ ଆଉ ଇନ୍ଦ୍ରିୟେ ଆସକ୍ତି
ବୋହି ଆଣେ ଆମ ପାଇଁ ଚରମ ଦୁର୍ଗତି ।
ଅସୁମାରୀ ମୃତ୍ୟୁ ତେଣୁ ଆମେ କରୁ ଭୋଗ
ଆମକୁ ଅକାଳେ ଗ୍ରାସେ ଜରା ବ୍ୟାଧି ରୋଗ ।

'ଆକ୍ଷିର ଆକ୍ଷିକି' କିନ୍ତୁ ଯେ ଜାଣେ ଜୀବନେ,
'କର୍ଣ୍ଣର କର୍ଣ୍ଣକୁ' ଚିହ୍ନେ ଆତ୍ମ ଦରଶନେ,
ଶରୀର ପ୍ରକୃତି ଠାରୁ ସେ ହୋଇ ମୁକତ
ଅମୃତତ୍ୱ ଉପଲବ୍ଧି କରେ ଅବିରତ ।
ଦୃଶ୍ୟମାନ ପ୍ରକୃତିକୁ ଅତିକ୍ରମ କରି
ସେ ସୂକ୍ଷ୍ମ ଅକ୍ଷୟ ନିତ୍ୟ ଶକ୍ତି ନେଲେ ଧରି
ଅମୃତତ୍ୱ ଉପଲବ୍ଧି କରିବ ଏ ନର
ଏ ଶକ୍ତି ଅନ୍ତରେ ତାର ନିହିତ କେବଳ ।
ଭିତର ଆଲୋକ ଯଦି ଯାଏ ସେହି ପାଇ
ବାହାର ଆଲୋକେ ତାର ପ୍ରୟୋଜନ ନାହିଁ ।

ଚୈତନ୍ୟ ସ୍ୱରୂପ ଆତ୍ମା ସକଳର ମୂଳେ
ଏ ସତ୍ୟକୁ ଜ୍ଞାନୀଜନ ଜୀବନେ ନ ଭୁଲେ ।
ଜାଣି ଏହା ଦେହ ଆଦି ଅନାତ୍ମ ପଦାର୍ଥେ
ଆସକ୍ତ ନ ହୋଇ ଧାଏଁ ଦ୍ୱନ୍ଦ୍ୱାତୀତ ସାଥେ ।
ସୁଖ ଦୁଃଖ ପୂର୍ଣ୍ଣ ମୃତ୍ୟୁମୟ ଏ ସଂସାର
ଅନାୟାସେ ଜ୍ଞାନୀଜନେ ହୋଇଥାନ୍ତି ପାର ।
ମୁକ୍ତ ଓ ଅମୃତମୟ ସୁଦିବ୍ୟ ଜୀବନ
ନିରତେ ଲଭନ୍ତି ତତ୍ତ୍ୱଦର୍ଶୀ ଜ୍ଞାନୀଜନ ।
ଯୋଗୀ ମୁନିଗଣ କରି ହୃଦୟ ମନ୍ଥନ
ଅବିରତେ ଲଭୁଥିଲେ ଅମୃତର କଣ ।
ସେ ଅମୃତ-କଣ ଆନେ ବିତରିବା ପାଇଁ
ଜ୍ଞାନ ଶିକ୍ଷା ଦେଉଥିଲେ ଶିଷ୍ୟଙ୍କୁ ବସାଇ ।
ଗୁରୁ ପ୍ରଦର୍ଶିତ ପଥ ଯେ ଅନୁସରଇ
ଆତ୍ମ-ଜ୍ଞାନ ଲାଭେ ସେହୁ ସମର୍ଥ ହୁଅଇ ॥

## ମନ୍ତ୍ର ତିନି

**ନ ତତ୍ର ଚକ୍ଷୁର୍ଗଚ୍ଛତି ନ ବାଗ୍ ଗଚ୍ଛତି ନୋ ମନଃ**
**ନ ବିଦ୍ମୋ ନ ବିଜାନୀମୋ ଯଥୈତଦନୁଶିଷ୍ୟାତ୍ ।**
**ଅନ୍ୟଦେବ ତଦ୍ବିଦିତାଦଥୋ ଅବିଦିତାଦଧି**
**ଇତି ଶୁଶ୍ରୁମ ପୂର୍ବେଷାଂ ଯେ ନସ୍ତଦ୍ବ୍ୟାଚଚକ୍ଷିରେ ॥**

## ମନ ବଚନ ନୟନରେ କଣ ସେ ଜଣା ପଡନ୍ତି :

ନୟନ ନ ଯାଏ ତହିଁ, ନ ଯାଏ ବଚନ,
ତହିଁ ଯାଇ ନ ପାରଇ କେବେହେଁ ଏ ମନ ।
କିପରି ସେ, ତାଙ୍କୁ ଆମେ କେବେ ଜାଣୁନାହିଁ,
ଜାଣୁନି, ତାହାଙ୍କୁ କେହ୍ନେ ଅପରେ ବୁଝାଇ ।

"ଜଣାଠୁଁ ପୃଥକ ସେହି, ଅଜଣା ଉର୍ଦ୍ଧ୍ୱରେ" -
ଆମକୁ ଯେ କହିଛନ୍ତି ବ୍ରହ୍ମ ବିଷୟରେ,
ସେହି ପୂର୍ବାଚାର୍ଯ୍ୟଗଣଙ୍କର ଏହି କଥା,
ଆମ୍ଭେମାନେ ଶୁଣିଅଛୁ, ନୁହେଁ ତ ଅନ୍ୟଥା ॥

**ମନ ଚକ୍ଷୁ କର୍ଣ୍ଣ ଆଉ ସକଳ ଇନ୍ଦ୍ରିୟେ**
**ବସ୍ତୁଜ୍ଞାନ ଆମକୁ ତ ନ ଦିଅନ୍ତି କିଏ ।**
**ଏମାନଙ୍କ ଅନ୍ତରାଳେ ଯେ ଆତ୍ମା ଅଛନ୍ତି**
**ସେ କେବଳ ସବୁ ଜ୍ଞାନ ଆମକୁ ଦିଅନ୍ତି ।**
**ଏ ପ୍ରକାଶମୟ ଆତ୍ମା କି ରୂପ କି ଭଳି**
**ତତ୍ତ୍ୱଦର୍ଶୀ ମୁନି ତାଙ୍କୁ କହନ୍ତି ଏପରି -**
**"ନୟନ ନ ଯାଏ ତହିଁ, ନ ଯାଏ ବଚନ,**
**ତହିଁ ଯାଇ ନ ପାରଇ କେବେହେଁ ଏ ମନ ।"**

## ତାଙ୍କୁ ଆଖି ଦେଖି ପାରେନା:

ବ୍ରହ୍ମ ଅତି ସୂକ୍ଷ୍ମ ଯେଣୁ ତାଙ୍କୁ କଦାଚନ
ଏହି ନେତ୍ରେ ତିଳେ କରି ନ ହୁଏ ଦର୍ଶନ ।
ଅଥବା ଆମରି ଏଇ ସୀମିତ ଭାଷାରେ
ଅସମର୍ଥ ଆମେ ତାଙ୍କୁ ବ୍ୟକ୍ତ କରିବାରେ ।
ସୀମିତ ବୁଦ୍ଧିରେ ପୁଣି ତାଙ୍କରି କଳ୍ପନା-
କରିବା କେବଳ ହୁଏ ଅତି ବିଡମ୍ବନା ।
ଚକ୍ଷୁ ଦ୍ୱାରା ବ୍ରହ୍ମଙ୍କୁ କେ ଦେଖି ନ ପାରଇ,
ବଚନରେ ତାଙ୍କୁ କେବେ କହି ନ ହୁଅଇ ।
ଚିନ୍ତା କରି ହୁଏ ନାହିଁ ତାଙ୍କୁ ଏ ମନରେ
ସେ ଥାନ୍ତି ଇନ୍ଦ୍ରିୟ-ମନ-ବୁଦ୍ଧି ଅଗୋଚରେ ।
ଦେଶକାଳେ ସୀମାୟିତ ପଦାର୍ଥ ସକଳେ
ଆମେ ସିନା ପାରୁ ଦେଖି ଏ ନେତ୍ର ଯୁଗଳେ;
କିନ୍ତୁ ସେହି ବ୍ରହ୍ମ ପରା ଦେଶକାଳାତୀତ
ସୂକ୍ଷ୍ମତାରେ ଆକାଶଠୁଁ ଅଧିକା ସେହି ତ ।
ତେଣୁ ସାଧାରଣ ଆଖି ତାହାଙ୍କୁ କିପରି
ଦେଖି ବା ପାରିବ ଲବେ ଶତ ଚେଷ୍ଟା କରି ?
ଆତ୍ମା ହିଁ କେବଳ ଦୃଶ୍ୟ ଜ୍ଞାନ ପ୍ରକାଶକ
ଚକ୍ଷୁ ଦେଖେ ଲଭି ପରା ଆତ୍ମାଙ୍କ ଝଲକ ।
ଏଥିରେ ଆତ୍ମାଙ୍କୁ ଚକ୍ଷୁ ଦେଖିବ କେସନେ ?
ତେଣୁ କେ ନ ପାରେ ଦେଖି ତାହାଙ୍କୁ ନୟନେ ।

## ବଚନ କହି ପାରେନା:

ତାଙ୍କୁ କେ କିପରି ଅବା କହିବ ବଚନେ
ବାକ୍ୟ ତ ସ୍ଫୁରିତ ହୁଏ ତାଙ୍କ କୃପା କଣେ ।

ଯେଉଁ ଉପଲବ୍ଧି ଆମେ କରୁଁ ଇନ୍ଦ୍ରିୟରେ
କରୁ ଯେଉଁ ଚିନ୍ତାମାନ ଅଥବା ମନରେ,
ବଚନେ ବା ବାକ୍ୟ ଦ୍ୱାରା ଆମେ ତାହା କହି,
ବସ୍ତୁ ବା ବିଷୟ ଜ୍ଞାନ ଅପରେ ଦିଅଇ ।
କିନ୍ତୁ ଯେ ଇନ୍ଦ୍ରିୟ-ମନ ଊର୍ଦ୍ଧ୍ୱେ ଅବସ୍ଥିତ
ସେ କେସନେ ବାକ୍ୟ ଦ୍ୱାରା ହୋଇବେ ବିଦିତ ?
ଜାତି ଗୁଣ କ୍ରିୟା ଯା'ର ରହିଛି ସଂସାରେ
ଇନ୍ଦ୍ରିୟ ମନରେ ତାହା ଜଣା ଯାଇପାରେ ।
ଏ ସକଳ ଗୁଣ ଯେଣୁ ନାହିଁ ବ୍ରହ୍ମଙ୍କର
ତେଣୁ ବ୍ରହ୍ମ ସଦା ମନ-ବାକ୍ୟ ଅଗୋଚର ।
ଇନ୍ଦ୍ରିୟ ବିଷୟୀଭୂତ ଯେତେ ଦ୍ରବ୍ୟମାନ
ରୂପେ ନାମେ ସେ ସବୁର ହୋଇଥାଏ ଜ୍ଞାନ ।
କିନ୍ତୁ ଈଶ୍ୱରଙ୍କ ଜ୍ଞାନ ସମ୍ପୂର୍ଣ୍ଣ ପୃଥକ
ସେ ପାଇଁ କହନ୍ତି ମୁନି ଜ୍ଞାନୀ ଗବେଷକ -
ଈଶ୍ୱର ଅଜ୍ଞେୟ, ଜ୍ଞାନ ଗୋଚର ନୁହନ୍ତି
ଚକ୍ଷୁ କର୍ଣ୍ଣ ବଚନେ ସେ ଜଣା ନ ପଡ଼ନ୍ତି ।

## ମନରେ ଭାବି ହୁଏନା:

ବ୍ରହ୍ମ ଯେ 'ମନର ମନ', ଆଗରୁ କଥିତ
ମନ ଦ୍ୱାରା ତେଣୁ ବ୍ରହ୍ମ ନୁହନ୍ତି ବିଦିତ ।
ରଜ୍ଜୁ ଦେଖି ସର୍ପ ଭ୍ରମ ହୋଇଥାଏ ମନେ
ରଜ୍ଜୁ ସର୍ପ-ଆତ୍ମା ଏଥିଁ ଦର୍ଶକ ନୟନେ ।
ରଜ୍ଜୁ ବିନା ସେ ସର୍ପର ନାହିଁ ଯେହ୍ନେ ସ୍ଥିତି
ବ୍ରହ୍ମ ବିନା ଏ ଇନ୍ଦ୍ରିୟ ସକଳେ ସେମିତି ।
ବ୍ରହ୍ମ ଯେ ମନର ଆତ୍ମା ସ୍ୱରୂପ ଅଟନ୍ତି
ସେଠାକୁ ମନର ତେଣୁ ନ ହୁଅଇ ଗତି ।

ଅରୂପ ଓ ନିରାକାର ବ୍ରହ୍ମେ କେଉଁପରି
ଚଞ୍ଚଳ ଆମରି ମନ ପାରିବ ବା ଧରି ?
ଇନ୍ଦ୍ରିୟ ମନରେ ସିନା ବସ୍ତୁ ହୁଏ ଜାଣି
ଏଥିରେ ବ୍ରହ୍ମଙ୍କୁ କିନ୍ତୁ କିଏ ଜାଣିଲାଣି ?

ଏବେ ପ୍ରଶ୍ନ ଜାଗେ ପ୍ରତି ପାଠକ ଅନ୍ତରେ,
ବ୍ରହ୍ମ ଯଦି ଅଗୋଚର ବାକ୍ୟ ଓ ମନରେ,
ତେବେ ତାଙ୍କ ବିଷୟରେ ଆଚାର୍ଯ୍ୟେ କିପରି
ଶିଷ୍ୟଗଣ ହୃଦେ ଜ୍ଞାନ ଦେଉଥିଲେ ଭରି ?

''ତାହା ମଧ ଜାଣୁନାହିଁ''- କହି ମୁନିବର
ଶିଷ୍ୟଙ୍କୁ ଏପରି ଭାବେ ଦିଅନ୍ତି ଉତ୍ତର ।
''କିନ୍ତୁ ଆତ୍ମଦର୍ଶୀ ପୂର୍ବସୂରୀ ମୁନିଗଣେ,
ଏହି ବ୍ରହ୍ମଙ୍କର ବ୍ୟାଖ୍ୟା କରନ୍ତି ଯେସନେ,
ତାଙ୍କୁଠୁଁ ଶୁଣିଛୁ ଆମେ ସେପରି ଭାବରେ
''ଜଣାଠୁଁ ପୃଥକ ସେହି, ଅଜଣା ଊର୍ଦ୍ଧ୍ୱରେ ।''

**ଏ ଶ୍ରୁତିକି ଲଜ୍ଜାବତୀ ରମଣୀ ପରାୟେ :**

ଶ୍ରୁତି ବାକ୍ୟ ସଦାବେଳେ ଗୂଢ଼ତା ବ୍ୟଞ୍ଜକ,
ପଢ଼ିଲେ ଚମକି ଉଠେ ହଠାତ ପାଠକ ।
ନିଜକୁ ଚତୁର ଜ୍ଞାନୀ ପଣ୍ଡିତ ବୋଲେଇ
ଶ୍ରୁତି ପାଶେ ଗଲେ କେହି ଅହଂକାର ନେଇ,
ଶେଷକୁ ନିରାଶ ହୋଇ ସେ ଫେରିବ ସିନା
ଅବୋଧ ସେ ଜାଣ ସଦା ଭାବ ଭକ୍ତି ବିନା ।
ସହଜେ ସୁପରିଚିତ ନ ହୋଇ ପ୍ରଥମେ,
ଲାଜୁକୀ ରମଣୀ ସମ ରହଇ ସରମେ ।

ଲଜ୍ଜାବତୀ ରମଣୀର ପ୍ରୀତି ଲାଭ ପାଇଁ
କୌଣସି ବ୍ୟଗ୍ରତା ଜମା କାମ ଦିଏ ନାହିଁ ।
ଆକୁତି ମିନତି ମୃଦୁ ମଧୁ ଆଳାପନା,
ରୂପ ଶୋଭା କହି ଅନ୍ତେ ପ୍ରଣୟ ପ୍ରାର୍ଥନା,-
କଲେ ଅବା ସେ ରମଣୀ ଶେଷେ ହୋଇ ବଶ
ହୃଦ-ପାତ୍ରୁଁ ତାର ଢାଳି ଦେବ ପ୍ରୀତି ରସ ।
କିନ୍ତୁ କାମାତୁର ଧୂର୍ତ୍ତ ହୋଇ ଅବିବେକୀ
ପୀରତି-ପାହାଚ ଯେତେ ମନରୁ ଉପେକ୍ଷି
କଲେ ଆଲିଙ୍ଗନ ପାଏ ବିପରୀତ ଫଳ
ଘୃଣା କ୍ରୋଧ ଦ୍ୱେଷ ଆଉ ଭର୍ତ୍ସନା କେବଳ ।
ତେସନେ ହେବାକୁ ଶ୍ରୁତି ସଙ୍ଗେ ପରିଚିତ
ସକଳ ଔଦ୍ଧତ୍ୟ ଦମ୍ଭ ତେଜିବା ଉଚିତ ।
କରି ମନ ନିରିମଳ ଶୁଦ୍ଧ ସୁବିମଳ,
ହୃଦୟେ ବୁହାଇ ପ୍ରେମ ଭକତି ନିର୍ଝର,
କଲେ ତାଙ୍କ ଆରାଧନା, ସେ ହୋଇ ପ୍ରସନ୍ନ
ତାଙ୍କ ଦିବ୍ୟ ମୂର୍ତ୍ତିରେ ସେ ଦେବେ ଦରଶନ ।

## ଜଣାଠୁଁ ପୃଥକ ସେହି ଅଜଣା ଊର୍ଦ୍ଧ୍ୱରେ :

ସେପରି ଏଠାରେ "ଜଣା ଅଜଣା ଉର୍ଦ୍ଧ୍ୱରେ"
ବୁଝିବାକୁ ଲୋଡ଼ା, ପ୍ରେମ ଭକ୍ତି ସ୍ୱଅନ୍ତରେ ।
ଆମ ଜଣା କଥା ଯେତେ ଆମ ଜୀବନର
ମନ ଓ ଇନ୍ଦ୍ରିୟେ ଆମେ ଜାଣୁଛେ ସକଳ ।
ଜନ୍ମାନ୍ଧ ଯେ ଦୁନିଆର ରୂପ ଦେଖି ନାହିଁ
ଜଗତ କଳ୍ପନା ସିନା ଉଦ୍‌ଭଟ ତା'ପାଇଁ ।
ସେପରି ଜନ୍ମରୁ ଯିଏ କାଲ ଏ ଜଗତେ
ସବୁ ଶବ୍ଦ ମୂଲ୍ୟହୀନ ତାର କର୍ଣ୍ଣପଥେ ।

ଆମ ଏ ଇନ୍ଦ୍ରିୟ-ମନେ ଜଗତ ସର୍ଜନା
ଇନ୍ଦ୍ରିୟ ଅଭାବେ ନାହିଁ ଜଗତ କଳ୍ପନା ।

ପୂର୍ବର ମନ୍ତ୍ରରୁ ଏହା ହୋଇଛି ବିଦିତ
ମନ ଓ ଇନ୍ଦ୍ରିୟେ ସବୁ ଜଡ଼ ସୁନିଶ୍ଚିତ ।
ମାଲିକ ନୁହନ୍ତି ସେହି, ଗୁମାସ୍ତା କେବଳ
ଜାଣିବା ଶକତି ନାହିଁ କିଛିତେ ତାଙ୍କର ।
ମାଲିକ ପଛରେ ଥାଇ ଗୁମାସ୍ତା କରନ୍ତି
ଶୁଣନ୍ତି ଦେଖନ୍ତି ଆଉ ସକଳ ଜାଣନ୍ତି ।
ମାଲିକ ତ ସତ୍ୟ, ଆତ୍ମା, ବିଶୁଦ୍ଧ ଚେତନା-
ଏକମାତ୍ର ଦ୍ରଷ୍ଟା ରୂପେ ସେ ହୁଅନ୍ତି ଗଣା ।
ଦ୍ରଷ୍ଟାଙ୍କର ଏ ସକଳ ଜଡ-ଯନ୍ତ୍ର ଜାଣ
ଏ ସବୁ ପ୍ରକାଶ କରି ନ ପାରନ୍ତି ଜ୍ଞାନ ।
କେଉଁଠି ଦର୍ଶନ-ଯନ୍ତ୍ର ଦ୍ରଷ୍ଟା ନ ହୁଅନ୍ତି
ଦ୍ରଷ୍ଟା, ଦୃଶ୍ୟ ଓ ଦର୍ଶନ ପୃଥକ ଅଟନ୍ତି ।
ଜଗତରେ ଜଣା ଯେତେ ଇନ୍ଦ୍ରିୟଗୋଚର
ବ୍ରହ୍ମ କିନ୍ତୁ ଇନ୍ଦ୍ରିୟ ଓ ମନ ଅଗୋଚର ।
ଜଣାଠୁଁ ପୃଥକ ତାଙ୍କୁ ସେ ପାଇଁ କହନ୍ତି
ସେ ଇନ୍ଦ୍ରିୟ-ମନ-ବୁଦ୍ଧି ଗୋଚର ନୁହନ୍ତି ।

ଜଣାର ଯେସନେ ଅଛି ରୂପ ନାମ ସ୍ଥିତି
ଅଜଣାର ସେଇ ଗୁଣ ନ ଥିବ କେମିତି ?
ଜଣାକୁ ଯେସନେ ଆମେ ଜାଣୁ ହୃଦଗତେ
ଅଜଣାକୁ ଜାଣି ନାହୁଁ ତେହ୍ନେ ଅନ୍ତର୍ଗତେ ।
ଏହା ବୋଲି ଅଜଣାର ରୂପ ନାମ ସ୍ଥିତି
ଥାଇ ନ ପାରଇ ବୋଲି ଭାବିବା କେମିତି ?
ତାହାକୁ ଅଜଣା ବୋଲି କହିବା କେସନ,
ଅରୂପ ଅଲେଖ ଯେଣୁ ବ୍ରହ୍ମ ନିରଂଜନ ।

## ଅଟନ୍ତି ସେ ପ୍ରୀତିଘେନା, ନୁହନ୍ତି ଅଜଣା:

ବ୍ରହ୍ମ ଯେଣୁ 'ଜଣା ଆଉ ଅଜଣା ଉର୍ଦ୍ଧ୍ୱରେ'
ତେବେ କି ଅଜ୍ଞେୟ ସେହି ସଭିଙ୍କ ପାଶରେ ?
ତା' ନୁହେଁଇ, ବ୍ରହ୍ମ ଜ୍ଞେୟ କେବଳ ସେ ଜନେ
ଯେ ନିରତ ଭଜୁଥାନ୍ତି ଆକୁଳିତ ମନେ ।
ସରଳ ନିର୍ମଳ ମନେ ସଂଯତ ଇନ୍ଦ୍ରିୟେ
ଖୋଜିଲେ ପ୍ରେମରେ ଧରା ଦେଇଥାନ୍ତି ସିଏ ।
ଦୁଧ ସବୁ ଅଂଶେ ଯେହ୍ନେ ଘିଅ ଥାଏ ଭରି
ଜଗତେ ସର୍ବତ୍ର ବ୍ୟାପ୍ତ ବ୍ରହ୍ମ ସେହିପରି ।
ମନ୍ଥିଲେ ଯେସନେ ହୁଏ ଘୃତ ଉତପନ୍ନ
ବ୍ରହ୍ମଙ୍କ ଦର୍ଶନ ହୁଏ ଧ୍ୟାନରେ ତେସନ ।
ତୁମ ଚାରି ପାଖେ ତୁମ ଆଗରେ ପଛରେ
"ସଂସାର" ଘେରିଛି ବୋଲି ଭାବିଛ ମନରେ ।
କେ ତୁମକୁ ପଚାରିଲେ "ଈଶ୍ୱର କେଉଁଠି ?"
'ଦୂରେ' 'ବହୁ ଦୂରେ' ବୋଲି ଦେଖାଅ ଆଙ୍ଗୁଠି ।
ଏହି ତ ଅଟଇ ଭ୍ରମ - "ଈଶ୍ୱର" ଅନ୍ତରେ
ସଦା ସ୍ଥିତ ମାତ୍ର ଏହି "ସଂସାର" ଦୂରରେ ।
ଖୋଜିଲେ ମିଳନ୍ତି ସିଏ ନୁହନ୍ତି ଦୁର୍ଲ୍ଲଭ
ନ ଖୋଜି କି ପାଏ କିଏ ଲୁଚିଲା ଦରବ ?
ସବୁଠି ଅଛନ୍ତି ସିଏ ବାହାରେ ଭିତରେ,
କେ କିଆଁ ଖୋଜିବ ତାଙ୍କୁ ଦୂର ଦୂରାନ୍ତରେ ।
ତାଙ୍କୁ ଛାଡି ଜଗତେ ଯେ ସବୁକୁ ଖୋଜନ୍ତି
ସିଏ ତାଙ୍କୁ କେତେବେଳେ ଦେଖା ନ ଦିଅନ୍ତି ।
ମାତ୍ର ଯେ ସବୁକୁ ଛାଡି ତାହାଙ୍କୁ ଖୋଜନ୍ତି
ଛାଇ ପରି ସିଏ ତାଙ୍କ ପାଖରେ ରହନ୍ତି ।

ସେ ଭକତ-ଗଣ୍ଠିଧନ, ଭକ୍ତ ହୃଦ-ହାର,
ଭକ୍ତ ପାଇଁ ଜନମନ୍ତି ମର୍ତ୍ତେ ବାର ବାର ।
ଭକ୍ତ ପ୍ରହଲାଦ ପାଇଁ ଖମ୍ବରୁ ବାହାରି
ନଖେ ହିରଣାକ୍ଷ୍ୟଶିପୁ ପକାଇଲେ ମାରି ।
ଭକ୍ତ ଧ୍ରୁବ ଘନ ବନେ କରିଲା ମିନତି
ଆଗେ ଉଭା ହେଲେ ଆସି ଧରି ସ୍ୱମୂରତି ।
ଚିରିଲେ ନିଜର ଛାତି ଭକ୍ତ ହନୁମାନ
ତା' ଭିତରେ ଦେଲେ ଦେଖା ରାମ- ଭଗବାନ ।
ଦ୍ରୌପଦୀ ଡାକିଲେ ଯେବେ କୁରୁ ସଭାତଳେ
ସେ ତ ଉଭା ହେଲେ ଯାଇ ବସନ ରୂପରେ ।
ମୀରା ଗାଏ ଉଚ୍ଚାଟରେ, ଶୁଣେ ନନ୍ଦସୁତ
ଜହର ପାତ୍ରରେ ସିଏ ହୋଇଲେ ଅମୃତ ।
ସାଥୀ ସୁଦାମାର ପାଦ ଧୋଇ ଦେଇ ସେହି
ଭକ୍ତ-ପତ୍ନୀ ପାଶେ ଗଲେ କନ୍ଧେ ଭାର ନେଇ ।
ଖାଇଲେ ବିଦୁର ଘରେ ବାରି ଶାଗ ଭଜା
ଅମୃତ ମଣୋହି ପିତା ସେ ଲାଗିଲା ମଜା ।
ଦାସିଆ ନଡ଼ିଆ ନେଇ ଶୂନ୍ୟରେ ଉଡ଼େଇ
ଖାଇ ସିଂହାସନ ତଳେ ପକାଏ ସଢ଼େଇ ।
ଲଢ଼େଇକି ଯାଏ ସିଏ ନିଜେ ଘୋଡା ଚଢ଼ି
ମନ୍ଦିରୁ ଲୁଚଇ କାହିଁ ନିଜ ରୂପ ଗଢ଼ି ।
ଭାବ ବିନୋଦିଆ ସେହି ଭକତିରେ ବନ୍ଧା
ଗୋପର ଗୁଆଳି ମେଳେ ସେ ଚରଣ-ଛନ୍ଦା ।
ପ୍ରତି ହୃଦେ ପ୍ରତି କ୍ଷଣେ ଆସୁଚି, ଯାଉଚି,
ପ୍ରେମରେ ଡାକିଲେ ସିଏ ଅଟକି ଚାହୁଁଚି ।
ଅରୂପ ସରୂପ ହୁଏ ଭକ୍ତ ପ୍ରେମ ପାଇ,
ସେ ବ୍ରହ୍ମ ହୋଇବେ କହ ଅଜ୍ଞେୟ କିମ୍ପାଇଁ ?

## ମନ୍ତ୍ର ଚାରି

**ଯଦ୍ ବାଚାନୁଭ୍ୟୁଦିତଂ ଯେନ ବାଗଭ୍ୟୁଦ୍ୟତେ ।**
**ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ॥**

ଯାହାଙ୍କୁ ପ୍ରକାଶ କରି ନ ପାରେ ବଚନ,
ଯାହାଙ୍କ ସକାଶେ ହୁଏ ବାକ୍ୟ ଉଚ୍ଚାରଣ;
ତାହାଙ୍କୁ ଜାଣିବ ବ୍ରହ୍ମ ।
କିନ୍ତୁ ସେ ନୁହନ୍ତି,
ଆତ୍ମା ଭିନ୍ନ ଲୋକେ ଆଉ ଯାହାଙ୍କୁ ପୂଜନ୍ତି ॥

### କଥାରେ ତାଙ୍କୁ କହିହୁଏ ନାହିଁ:

ଯିଏ ସର୍ବବ୍ୟାପୀ ନିତ୍ୟ ସର୍ବ ଶକ୍ତିମାନ
ସେହି ଏକ, ସେ ଚୈତନ୍ୟ, ପୁରୁଷ ମହାନ୍ ।
ଏ ଅଖିଳ ଜଗତରେ ପୂରି ରହିଛନ୍ତି
ସେ ଆତ୍ମା ସ୍ୱରୂପେ ଆମ ଅନ୍ତରେ ଅଛନ୍ତି ।
ଆମର ସକଳ ଜ୍ଞାନ ପ୍ରକାଶକ ସେହି
ଇନ୍ଦ୍ରିୟ ଓ ମନ ତାଙ୍କୁ ନ ଜାଣନ୍ତି କେହି ।
ବଚନରେ ପ୍ରକାଶିତ ସେ ହୁଅନ୍ତି ନାହିଁ
ବରଂ ବାକ୍ୟ ଉଚ୍ଚାରିତ ହୁଏ ତାଙ୍କ ପାଇଁ ।

''ବାକ୍'' ଶବ୍ଦ ଏଠି ବ୍ୟାଖ୍ୟା କରନ୍ତି ଶଙ୍କର,
ବାକ୍ୟ-ବାହୀ ଯନ୍ତ୍ର ତାହା ନୁହଁଇ କେବଳ ।
ସେ ତ ବର୍ଣ୍ଣମାଳା ଆଉ ବର୍ଣ୍ଣ ସଂଯୋଜିତ
ବାଗିନ୍ଦ୍ରିୟେ ହୁଏ ଯେତେ ଶବ୍ଦ ଉଚ୍ଚାରିତ ।
ଏ ଶବ୍ଦ ରାଜିରେ ଅବା ଏ କଥା-ଯନ୍ତ୍ରରେ
ବାକ୍‌ଶକ୍ତି ନ ଥାଏ କେବେ କୌଣସି ଭାବରେ ।

ବାକ୍‌ଶକ୍ତି ଚୈତନ୍ୟଙ୍କର ଏକକ ପ୍ରକାଶ,
ଯେ ଦେହେ ଶାଶ୍ୱତ ଆତ୍ମା କରନ୍ତି ନିବାସ ।
ଗତିମୟ କର୍ମଶୀଳ ପ୍ରାଣକେନ୍ଦ୍ର ସେହି,
ତାଙ୍କୁ ଛାଡ଼ି କଥା କହି ନ ପାରିବେ କେହି ।
ଜୀଅନ୍ତା ମଣିଷ ସିନା ପାରେ କଥା କହି,
ମୂର୍ଚ୍ଛାରର ମୁଖେ କଣ ବଚନ ସ୍ଫୁରଇ ?
ଚୈତନ୍ୟଙ୍କ ଲାଗି ଶବ୍ଦ ହେଲେ ବି ସ୍ଫୁରିତ
ତାଙ୍କୁ ବୁଝାଇବା ପାଇଁ ଏ ଶବ୍ଦେ ଲଜ୍ଜିତ ।
ଅଗ୍ନି ଅନ୍ୟ ପଦାର୍ଥକୁ ଜାଳେ ବା ପ୍ରକାଶେ,
କିନ୍ତୁ ଏ ନିୟମ ଲାଗେ ନାହିଁ ନିଜ ପାଶେ ।
ନିଜକୁ କି ପାରେ ଅଗ୍ନି କେତେବେଳେ ଜାଳି ?
ଅବା ସ୍ୱପ୍ରକାଶେ ଅଛି ସାମର୍ଥ୍ୟ ତାହାରି ?
ତେସନେ ବାକ୍‌ଶକ୍ତି ଯେଣୁ ସତ୍ୟର ଆଭାସ,
ସତ୍ୟକୁ ସେ କେହ୍ନେ କରି ପାରିବ ପ୍ରକାଶ ?
ଶୁଦ୍ଧ ସତ୍ୟ ଆତ୍ମା ଯେଣୁ ରୂପ ନାମ ହୀନ
ତାଙ୍କୁ ବୁଝାଇବା ତେଣୁ ନିଶ୍ଚିତ କଠିନ ।

## ବିଦ୍ୟୁତ୍‌ଶକ୍ତି ଓ ବ୍ରହ୍ମ:

ବିଦ୍ୟୁତ ଶକ୍ତିକୁ କେହି ସାଧାରଣ ଜନ
ବୁଝାଇଲେ, ସେ କି ବୁଝି ପାରିବ ତେସନ ?
କାଚ ବଲ୍ବ ସୂକ୍ଷ୍ମ ତାରେ ଜଳିବା ଆଲୁଅ
'ବିଜୁଳି ଆଲୁଅ' ବୋଲି ସେହି ଲୋକ କୁହେ ।
ବିଦ୍ୟୁତ୍ ପ୍ରବାହ ପଥେ ସେ ଯେଉଁ ଶକତି
ସମାନ ଭାବରେ ସଦା କରୁଥାଏ ଗତି,
ବଲ୍ବ ଭିତରର ସୂକ୍ଷ୍ମ ତାର ଯେବେ ଛୁଏଁ
ସେ ଶକ୍ତି ଆଲୋକ ରୂପେ ପ୍ରକାଶିତ ହୁଏ ।

ଏ କଥା ସେ ଲୋକ ଯେବେ କରେ ଅନୁଭବ
ତେବେ ବୁଝେ, ଶକ୍ତି ନୁହେଁ 'ତାର' ବା 'ବଲ୍ବ' ।
ସେହି ତ 'କରେଣ୍ଟ' ନାହିଁ ନାମ ବା ଆକାର
'ତାର' 'ବଲ୍ବ' ସାଥେ ନାହିଁ ସମ୍ବନ୍ଧ ତାହାର ।
ଏ ଶକ୍ତି ଆଲୁଅ ଜାଳେ, ପଙ୍ଖାକୁ ଘୂରାଏ
ରେଡିଓ ବଜାଏ ତଳୁ ପାଣି ବି ଉଠାଏ ।
ଏକା ଶକ୍ତି କରେ ଭିନ୍ନ କାମ ଭିନ୍ନ ସ୍ଥାନେ,
ଦେହସ୍ଥିତ ଆତ୍ମା ତେହ୍ନେ ଏ ଶକ୍ତି ସମାନେ ।
ଆଖିରେ ଦର୍ଶନ, କର୍ଣ୍ଣେ ଶ୍ରବଣ ଶକତି
ମୁଖରେ ବାକ୍‌ଶକ୍ତି ରୂପେ ପ୍ରକାଶ ହୁଅନ୍ତି ।
ଯେଉଁ ଶକ୍ତି ମୋ ଦେହରେ ଏ କାମ କରୁଛି,
ସେହି ଏକା ଶକ୍ତି ବିଶ୍ୱ-ପ୍ରାଣେ ବିହରୁଛି ।
''ମମାତ୍ମା ସର୍ବ ଭୂତାତ୍ମା''- କହି ତେଣୁ ସନ୍ଥେ,
ଭ୍ରମନ୍ତି ନିର୍ଭୟ ହୋଇ ଭବାରଣ୍ୟ ପଥେ ।
ଏ ଯେ ଆତ୍ମା ସର୍ବବ୍ୟାପୀ ଶ୍ରୁତିର ପ୍ରମାଣ,
ତାହାକୁ କେବଳ ତୁମେ ବ୍ରହ୍ମ ବୋଲି ଜାଣ ।
ଏ ମନ୍ତ୍ରର ଶେଷ ଅଂଶ ପଢ଼ିଲେ ପାଠକେ,
ଭାବିବେ, ଶ୍ରୁତି କି ନିନ୍ଦେ ଇଷ୍ଟ ଉପାସକେ ॥
କିନ୍ତୁ ବ୍ରହ୍ମ ଆତ୍ମା ଏକ-ପୃଥକ ନୁହନ୍ତି
ସେ ତ ''ଏକଂ ସଦ୍‌ବିପ୍ରାଃ ବହୁଧା ବଦନ୍ତି ।''
ଏକ ସୂର୍ଯ୍ୟ ଆକାଶରେ ଉଦ୍‌ଭାସେ ଜଗତ
ଭିନ୍ନ ଜଳ ପାତ୍ରେ ପଡ଼େ ବିମ୍ବ ଶତ ଶତ ।

**ଶିବ - ଶକ୍ତି ଅଭିନ୍ନ:**

ବ୍ରହ୍ମ ସତ୍ୟ,ବ୍ରହ୍ମ ନିତ୍ୟ ବ୍ରହ୍ମ ହିଁ ଅକ୍ଷୟ ।
ଶ୍ରୁତି ସଂହିତାରେ ଏହା ହୋଇଅଛି ଥୟ ।

ସଗୁଣ ନିର୍ଗୁଣ, ବ୍ୟକ୍ତ ଅବ୍ୟକ୍ତ ଭେଦରେ
ସାକାର ଓ ନିରାକାର ବ୍ରହ୍ମ ସ୍ୱରୂପରେ ।
ଅନଳ ଓ ଆଉ ତାର ଦାହିକା ଶକତି,
ଭିନ୍ନ ନୋହି ସଦା ଯେହ୍ନେ ଏକାଠି ରହନ୍ତି;
ତେହ୍ନେ ବ୍ରହ୍ମ ଶକ୍ତି କେବେ ନୁହନ୍ତି ଅଲଗା
ସେ ପୁରୁଷ ସେ ପ୍ରକୃତି ନିତ୍ୟ ଅନ୍ତରଙ୍ଗା ।
''ଶିବ ଶକ୍ତି ବିଭାଗେନ ସୃଷ୍ଟି କଳପନା'' -
ବେଦୋପନିଷଦେ ଏହା ହୋଇଛି ବର୍ଣ୍ଣନା ।
ଅତିନ୍ଦ୍ରିୟ ସତ୍ତା ଶିବ, ତାଙ୍କ ଚାରି ପଟେ,
ଶକ୍ତି ବା ପ୍ରକୃତି ଘୂରି ଘୂରି ଅବିରତେ,
ସେହି କ୍ରିୟା ପ୍ରତିକ୍ରିୟା ଫଳରେ ନିରତ
ଜାତ ହେଉଅଛି ପରା ଏ ଦୃଶ୍ୟ ଜଗତ ।
'ଶିବ' ଜ୍ଞାନଗତ ମୂଳତତ୍ତ୍ୱକୁ ବୁଝାଏ
'ଶକ୍ତି' ତାର ସାଥୀ ଆଦିମରୁ ସାଥେ ଥାଏ ।
ଅଭିନ୍ନ ଏ ଶିବ-ଶକ୍ତି ମୁନିଏ ଗାଆନ୍ତି,
କାଗଜର ଫର୍ଦ୍ଦ ପରି ସଦା ରହିଥାନ୍ତି ।
କାଗଜ ଫର୍ଦ୍ଦର ଦୁଇ ଫାଳ ଥାଏ ରହି,
ଫାଳକୁ ଅଲଗା କଣ କେ କରି ପାରଇ ?
କହିବା ବୁଝିବା ପାଇଁ ଦ୍ୱୈତ କଳପନା,
ଭିନ୍ନ ଭାବେ ବ୍ରହ୍ମଙ୍କର ଭିନ୍ନତା ସୂଚନା ।
ଯେବେ ସେ କରନ୍ତି ସୃଷ୍ଟି ପାଳନ ସଂହାର
ସେତେବେଳେ ସେ ପ୍ରକୃତି, ଶକ୍ତି - ଏ ବିଚାର ।
ଏ ପୁରୁଷ ନିରାକାର, ପ୍ରକୃତି ସାକାର
ଏକ ହୋଇ ଆଚରନ୍ତି ଅଶେଷ ବେଭାର ।

ଥିର ପାଣିକି ତ 'ପାଣି' ଦୁନିଆ କହଇ
ତାକୁ ମଧ 'ପାଣି' କହେ ଯେବେ ଚହଲଇ ।

ବଙ୍କେଇ ଗଲେବି ସାପ, ସେ 'ସାପ' ବୋଲାଏ
ସେହି ପୁଣି 'ସାପ' ଯେବେ ଟେକି ବାନ୍ଧିଥାଏ ।
ପୁରୁଷ ପ୍ରକୃତି ତେହ୍ନେ ସତତ ଅଭେଦ
ସାଧନ ଭେଦରେ ଯାହା ବିରାଜଇ ଭେଦ ।

## ବ୍ରହ୍ମାକାଶରେ ଜ୍ଞାନ ଭକ୍ତି :

ଜ୍ଞାନୀ ଧ୍ୟାନେ ଭଜଇ ଯେ ବ୍ରହ୍ମ ନିରାକାର,
ଭକତ ଭଜନେ ସେ ତ ଈଶ୍ୱର ସାକାର ।
ଜ୍ଞାନୀ କହେ ବ୍ରହ୍ମ, ଭକ୍ତ କହେ ଭଗବାନ
ବିଜ୍ଞାନୀ କହଇ ସେହି ଉଭୟେ ସମାନ ।
ତେଣୁ ଉଭୟଙ୍କୁ ସିଏ ସାଇତି ଅନ୍ତରେ
ଜ୍ଞାନ ଭକ୍ତି ସମନ୍ୱୟ କରନ୍ତି ଆଦରେ ।

ସଗୁଣ ନିର୍ଗୁଣ ବ୍ୟକ୍ତ ଅବ୍ୟକ୍ତ ଭେଦରେ,
ବ୍ରହ୍ମ ନିତ୍ୟଙ୍କର ଲୀଳା ଚାଲେ ଏ ବିଶ୍ୱରେ ।
ବ୍ରହ୍ମ ନିତ୍ୟ, ସେ ପୁରୁଷ, ସେହି ନିରାକାର
ଲୀଳା ହିଁ ସାକାର ସେହି ପ୍ରକୃତି ବିଚାର ।
ସେହି ରାମ ସେହି କୃଷ୍ଣ ସେହି ତ ପାର୍ବତୀ
ଯୁଗେ ଯୁଗେ ଭକତଙ୍କ ଘେନନ୍ତି ଭକତି ।

ଇଷ୍ଟ ଉପାସନା ଅବା ମୂର୍ତ୍ତି ପୂଜା ପାଇଁ
ଅବିଚାରେ ଶ୍ରୁତି କେବେ ମନା କରି ନାହିଁ ।
ପ୍ରେମ ବିନା ଜ୍ଞାନର କି ମୂଲ୍ୟ ଏ ଜଗତେ
ଜ୍ଞାନ ବିନା ପ୍ରେମ ତେହ୍ନେ କୁସଂସ୍କାର ସତେ ।
ଜ୍ଞାନୀ ନୋହି କହ କିଏ ହୋଇଛି ଭକତ,
ବିନା ପ୍ରେମେ ଫିଟେ ନାହିଁ ବେଦାନ୍ତର ପଥ ?

ଜ୍ଞାନ ଭକ୍ତି ବେନିଏ ତ ଦୁଇ ପକ୍ଷ ସମ
ବ୍ରହ୍ମାକାଶେ ଉଡ଼ିବାକୁ ହୋଇଥାଏ କ୍ଷମ ।
ସାଧନା-ବୃକ୍ଷର ଏହି ବେନି ଫଳ ଫୁଲ
ବେନି ମିଶି 'ସୁଧାପୂର୍ଣ୍ଣ-ପାତ୍ର' ସମତୁଲ ।
ବେନି ସମାହାରେ ହୁଏ 'ବିନମ୍ର-ପ୍ରାର୍ଥନା',
ଗୋଟିକୁ ଛାଡ଼ିଲେ ସିଦ୍ଧି ଲାଭ ବିଡ଼ମ୍ବନା ।

## ମନ୍ତ୍ର ପାଞ୍ଚ

***ଯନ୍ମନସା ନ ମନୁତେ ଯେନାହୁର୍ମନୋ ମତମ୍ ।
ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ॥***

ମନଦ୍ୱାରା ଯେ ନୁହନ୍ତି ମନନ କିଅତ,
ବରଂ ମନ ଯାହା ଦ୍ୱାରା ହୁଏ ପ୍ରକାଶିତ,
ଏପରି କହନ୍ତି ଯେଉଁ ବ୍ରହ୍ମବିଦ୍‌ଗଣ
ତାଙ୍କୁ ବ୍ରହ୍ମ ବୋଲି ତୁମେ ଜାଣ ଅନୁକ୍ଷଣ ।
ଆତ୍ମା ଭିନ୍ନ ଆଉ ଲୋକେ ଯାହାଙ୍କୁ ପୂଜନ୍ତି;
ଭଲ ଭାବେ ଜାଣି ରଖ, ବ୍ରହ୍ମ ସେ ନୁହନ୍ତି ।

**ଶରୀରର** ଯେଉଁ ଯନ୍ତ୍ରେ ଚିନ୍ତା ବା ମନନ-
କରା ଯାଇଥାଏ ତାକୁ କୁହାଯାଏ "ମନ" ।
ଇନ୍ଦ୍ରିୟ ବାଚକ ତେଣୁ ଏ ମନ ଅଟଇ
କାମନା ସଂକଳ୍ପ ଇଚ୍ଛା ଭୟ ଥାଏ ତହିଁ ।
ଏ ମନର କାମନାଦି ବୃତ୍ତି ଅକଳନ
ଏହି ବୃତ୍ତିଯୁକ୍ତ ଅନ୍ତଃକରଣ ହିଁ ମନ ।
ଏ ଅନ୍ତଃକରଣେ ଯେଣୁ ବୁଦ୍ଧି ରହିଥାଏ
ମନ ବୁଦ୍ଧି ତେଣୁ ଏକ ଏଠାରେ ବୁଝାଏ ।

## 'ଶରୀର-ତରୁ'ରେ 'ମନ-ମର୍କଟ':

ଅସ୍ଥିମାଂସ ଅନ୍ତନାଡ଼ି ଜାଲରେ କୁଟିଳ
ଭଙ୍ଗୁର ବିକାର ଯୁକ୍ତ ଅଟଇ ଶରୀର ।
ଦୁଃଖର ଆଧାର ମାତ୍ର ଯାତନାର ସିନ୍ଧୁ
ଏ ଜଡ଼-ମନ୍ଦିରେ ନାହିଁ ଆନନ୍ଦର ବିନ୍ଦୁ ।
ପଞ୍ଚଭୂତେ ଗଢ଼ା ମାଟିଘଟେ ପରିଚିତ,
ଆତ୍ମା ଥିବା ଯାଏଁ ମାତ୍ର ଚେତନ ପ୍ରତୀତ ।
ଏ ସଂସାର-ମହାରଣ୍ୟେ ବଟତରୁ ପ୍ରାୟେ
ଏ ଶରୀର ଗୋଟି ଯାହା ଶୋଭା ପାଇଥାଏ ।
ଏ ତରୁ ଆଶ୍ରିତ ମନ ରୂପକ ମର୍କଟ
ତା' ସହିତ ବନ୍ଧୁ ଅନୁଚର ଶତ ଶତ ।
ଅଂହକାର-ଶାରଗୁଣା, ତୃଷ୍ଣା ରୂପ ସର୍ପ
କ୍ରୋଧ ରୂପୀ ବାୟସ ଯେ କରୁଥାଏ ଦର୍ପ ।
ଇନ୍ଦ୍ରିୟ ରୂପକ ପକ୍ଷୀଗଣ ଏ ଶରୀରେ
ବସା ବାନ୍ଧି ରହିଛନ୍ତି କେ କେତେ ବିଧିରେ ।
ଅଂହକାର ରୂପୀ ଗୃହସ୍ଥର ଗୃହ ପ୍ରାୟେ
ଏ ଶରୀର ଜନମନ ମୁଗ୍ଧ କରୁଥାଏ ।
ଦୀନ ଭାବେ ଏଥି ମନ କୁକ୍କୁର ପରାୟେ
ଅକାରଣେ ଏଣେ ତେଣେ ଧାଇଁ ବୁଲୁଥାଏ ।
କଣା ପାତ୍ର ଯେହ୍ନେ ଜଳେ ହୁଏ ନାହିଁ ପୂର୍ଣ୍ଣ
ଯେତେ ପାଇଲେ ବି ମନ ସତତ ଅପୂର୍ଣ୍ଣ ।
ଚଞ୍ଚଳ ତରଙ୍ଗ ପରି ମନବୃତ୍ତି ରାଜି
କ୍ଷଣକରେ ଉଠି ପୁଣି କ୍ଷଣେ ପଡ଼େ ଭାଜି ।
ତୀରସ୍ଥ ତରୁକୁ ନଦୀ ଗ୍ରାସ କରେ ଯେହ୍ନେ
ଅମାନିଆ ମନ ଗ୍ରାସେ ସମସ୍ତଙ୍କୁ ତେହ୍ନେ ।

## "ମନ" - ଗିରସ୍ତ

ବହୁ ସଉତୁଣୀ ମେଳେ ଏ "ମନ" ଗିରସ୍ତ
ହନ୍ତସନ୍ତେ ପ୍ରାଣ ଯାଏ ଦିନ ହୁଏ ଗତ ।
ରସନା ମଧୁର ଚାହେଁ, ଉଦର ଭକ୍ଷିଣୀ
ଶିଶ୍ନ ଚାହେଁ ଭୋଗ ପାଇଁ ଚାରୁ ସୁକାମିନୀ,
ଚର୍ମ ଚାହେଁ ଚନ୍ଦନର ଶୀତ ସୁବାସିତ
ଆଉ ତଳ୍ପ ପୁଷ୍ପ ସମ ମଧୁ ସୁରଭିତ ।
କୁଚିତ୍ର ଦର୍ଶନେ ଏଇ ନୟନ ଚପଳା
ଚାହିଁ ଚାହିଁ ସବୁ ଗିଳି ପକାଇବ ପରା ।
କର୍ଣ୍ଣ ମଧୁଗାନେ, ଘ୍ରାଣ ସୁଗନ୍ଧେ ଆସକ୍ତି
ସ୍ୱବିଷୟେ ଗିରସ୍ତକୁ ସକଳେ ଟାଣନ୍ତି ।
ସମୁଦ୍ର ଶୋଷଣ ଅବା ଗିରି ଉତ୍ପାଟନ,
ସହଜ ବି ହୋଇପାରେ ଅନଳ ଭକ୍ଷଣ ;
କିନ୍ତୁ ଏ ମନକୁ ବଶ କରିବା ନିମନ୍ତେ
କେତେ କଷ୍ଟକର କିଏ ଜାଣିବ କେମନ୍ତେ ?
ଦୃଶ୍ୟମୟ ଜଗତର କାରଣ ଏ ମନ
ତେଣୁ ମନ ବଶ ହେବା ଅସାଧ୍ୟ ସାଧନ ।

## ମନ-ବ୍ୟାଧିର ଚିକିତ୍ସା:

ବ୍ୟାଧିର ଚିକିତ୍ସା କରା ହୁଅଇ ଯେପରି
ମନର ଚିକିତ୍ସା ଲୋଡ଼ା ହୁଏ ସେହିପରି ।
ଆରୋଗ୍ୟ କରିବା ପାଇଁ ମନର ଏ ରୋଗ
ଗୀତାରେ ରଖିଲେ କୃଷ୍ଣ ତେଣୁ "କର୍ମଯୋଗ" ।
ଚିତ୍ତ ଶୁଦ୍ଧି ମନ ଶୁଦ୍ଧି ହୋଇବା ନିମନ୍ତେ
କରିବ ନିଷ୍କାମ କର୍ମ କେବଳ ଜଗତେ ।

ଯେତେ ଯେତେ କର୍ମ ସବୁ ମନର ଦର୍ପଣ,
ଏହି ମନ ସ୍ୱରୂପର ତା' ପ୍ରତିଫଳନ ।
ମୁହଁର କୁରୂପ ଯେବେ ପଡ଼େ ଦର୍ପଣରେ
ଦର୍ପଣକୁ କହ କିଏ ଭଙ୍ଗାରୁଜା କରେ ?
ବରଂ କରାଯାଏ ମୁହଁ ଗୋଟିକୁ ନିର୍ମଳ
ଦର୍ପଣ ସୂଚେଇ ଥାଏ ଏ ମୁହଁର ମଳ ।
ମନ-ମଳ ଯେତେ କର୍ମେ ପଡ଼ିଥାଏ ଜଣା
ସେଥିପାଇଁ ଏ ନିଷ୍କାମ କର୍ମର କଳ୍ପନା ।
ମୁଖ ନିର୍ମଳତା ପାଇଁ ଦର୍ପଣ ପରାୟେ
ଚିତ୍ତ ଶୁଦ୍ଧି ପାଇଁ କର୍ମ ତେହ୍ନେ କରାଯାଏ ।

ଏ ବୃତ୍ତି ସମ୍ପନ୍ନ ମନେ ଆତ୍ମାଙ୍କ ମନନ,
ଚିନ୍ତା କି ଧାରଣା ହୁଏ ନାହିଁ କଦାଚନ ।
ଇନ୍ଦ୍ରିୟରେ ଅନୁଭୂତି ଯା' ହୁଏ ଆମରି
ସେ ସବୁକୁ ଆମେ ମନେ ପାରୁ ଚିନ୍ତା କରି ।
ଇନ୍ଦ୍ରିୟ ଅତୀତ କିନ୍ତୁ ଏହି ଆତ୍ମା ଯେଣୁ,
ମନ ତାଙ୍କ ଚିନ୍ତା କରି ପାରେ ନାହିଁ ତେଣୁ ।

## ମନ ତାଙ୍କୁ ଚିନ୍ତା କରି ପାରେନା :

ମନର ତ ନାହିଁ ନିଜ ମନନ ଶକତି
ଖାଦ୍ୟାଂଶରେ ଗଢ଼ା, ଜଡ ତାହାର ପ୍ରକୃତି ।
ଆତ୍ମ-ଜ୍ୟୋତିରେ ଏ ମନ ହୋଇ ଉଦ୍‌ଭାସିତ
ମନନ ଶକତି ଲାଭ କରଇ ନିଶ୍ଚିତ ।
ସ୍ୱରୂପ ଆତ୍ମାଙ୍କୁ ତେଣୁ କହ କି ପ୍ରକାରେ
ଚିନ୍ତା ବା ଧାରଣା ଏହି ମନ କରିପାରେ ?
ଆତ୍ମାଙ୍କ ସକାଶେ ଯେଣୁ ମନ ପ୍ରକାଶିତ,
ତେଣୁ ମନ କଥା ତାଙ୍କୁ ସବୁ ସୁବିଦିତ ।

**ଆତ୍ମା ଅନ୍ତର୍ଯ୍ୟାମୀ :**

ମନର ମନନ ଚିନ୍ତା ଧାରଣା ସମସ୍ତ
ବ୍ରହ୍ମଙ୍କ ଅନନ୍ତ ଜ୍ଞାନ ସୀମା ଅନ୍ତର୍ଗତ ।
ତେଣୁ ଅନ୍ତର୍ଯ୍ୟାମୀ ରୂପେ ସେ ଆତ୍ମା ବିଦିତ
ଅନ୍ତର ଲଭଇ ସଦା ତାଙ୍କରି ଇଙ୍ଗିତ ।

**ଅସଲ ନକଲ କଣ:**

ଆମେ ସବୁ ଯେତେବେଳେ ଭୁଲି ଆମ ସତ୍ତା,
ନିଜଠିଁ ଆରୋପ କରୁ କ୍ଷୁଦ୍ର ଦୁର୍ବଳତା,
ଅସଲ ନ ଦେଖି, ଦେଖୁଁ ନକଲ କେବଳ
ନକଲକୁ ଭାବିଥାଉଁ, ଏହି ତ ଅସଲ ।
ବୁଦ୍ଧିର ସେ ଆବରଣ ଆତ୍ମାଙ୍କୁ ଘୋଡାଇ,
ନାନାଦି ବିକ୍ଷେପମାନ ଥାଏ ଉପୁଜାଇ ।
ଅଜ୍ଞାନ-ଜଳଧି-ଜଳେ ବିକ୍ଷେପର ଢେଉ
ସେ ମନ ବୁଦ୍ଧିରେ ଆମେ ସଦା ଯୁକ୍ତ ହେଉ ।
ସେତେବେଳେ ଭାବୁ ଆମେ, ଯେପରି ଏ ମନ
ଆମ ଗୁରୁତ୍ୱର ଏକ ବଳିଷ୍ଠ କାରଣ ।
ଏ ମନର କରାମତି କିଏ ସେ କଳିବ ?
ବୁଦ୍ଧିର ଯା' ଗଭୀରତା କେ ଅବା ମାପିବ ?
ଏ ମନ ବୁଦ୍ଧିରେ କରି କେତେ ବାହାଦୁରୀ
ଆମ ଶ୍ରେଷ୍ଠତାର ଆମେ ଦେଖାଉଁ ଚାତୁରୀ ।
କଠୋର ସାଧନା କରି ଯୋଗୀ ମୁନିଗଣେ
ଆମ୍ଭମାନଙ୍କର ଦମ୍ଭ ଭାଙ୍ଗନ୍ତି ଯେସନେ ।
ସେ କହନ୍ତି,-ଏ ମନର ନାହିଁ କିଛି ବଳ
ଖାଦ୍ୟେ ଗଢ଼ା ଭାବନାର ଏ ଯନ୍ତ୍ର କେବଳ ।

ମନ ଜଡ଼, କାହିଁ ତାର ଚେତନ ଶକତି,
ଏଥିରେ କେସନେ ହେବ ଚଞ୍ଚଳତା ଗତି ?
କିନ୍ତୁ ମିଶି ପ୍ରାଣକେନ୍ଦ୍ର ଏ ଆତ୍ମା ସହିତ
ଏ ମନ ଜୀବନ୍ତ ପ୍ରାୟେ ହୁଅଇ ସ୍ପନ୍ଦିତ ।
ଏ ମନେ ଆତ୍ମାଙ୍କୁ ଚିନ୍ତା କରି ହୁଏ ନାହିଁ ।
ମନ ଯେ ମନନ କରେ ମାତ୍ର ତାଙ୍କ ପାଇଁ ।

ବଲ୍‌ବର ନ ଥାଏ ତ ଜାଳିବା ଶକତି
ତାହା ଜଳେ ଯେବେ ହୁଏ କରେଣ୍ଟର ଗତି ।
ବଲ୍‌ବ-ତାରେ କରେଣ୍ଟର ଉତ୍ତାପ ଲାଗିଲେ
ବଲ୍‌ବ ଜଳି ଉଠେ ସିନା ତାହାରି ସାଥିରେ ।
କିନ୍ତୁ ଯେଉଁ ଉଜ୍ଜ୍ୱଳତା ଥାଏ ତା' ଭିତରେ
ତାହାକୁ କରେଣ୍ଟ ବୋଲି ଭାବୁ କି ମନରେ ?
ଆତ୍ମାଙ୍କୁ ତେହ୍ନେ ଏ ମନ ଚିନ୍ତି ନ ପାରଇ
ମନ ଚିନ୍ତା ସବୁ ଆତ୍ମା ସକାଶେ ଘଟଇ ।
ଗାଡ଼ି କଣ ଚାଳକଙ୍କୁ ପାରେ କେବେ ଚପି ?
ଚାଳକ ଓହ୍ଲେଇ ଗଲେ ସେ ରହେ ଅଟକି ।
ନିଜର ସ୍ୱତନ୍ତ୍ର ଗତି ନ ଥିବା କାରଣେ
ଚାଳକ ବିହୁନେ ଗାଡ଼ି ଅଟକଇ କ୍ଷଣେ ।
ତେହ୍ନେ ଆତ୍ମ-ଚୈତନ୍ୟଙ୍କ ଆଗେ ହେଲେ ମନ
ମନର ଅସ୍ତିତ୍ୱ ଲୀନ ହୁଅଇ ତକ୍ଷଣ ।

ଆମ ସାଙ୍ଗେ ଛାଇ ପରି ଯେଉଁ ମନ ଥାଏ,
ଅବିରାମ ଭାବନାର ସ୍ରୋତକୁ ବୁହାଏ ।
ଏ ସ୍ରୋତର ଯେତେବେଳେ ହୁଅଇ ବିରତି,
ତେବେ ବୁଝି ହୁଏ ମନ ପଛେ ଥିବା ଶକ୍ତି ।

## ମନ-ମୁନରେ ଆତ୍ମ-ଦର୍ଶନ :

କରୁଥିଲେ ଅହରହ ପୂଜା ତପ ଧ୍ୟାନ,
ଭାବନା-ସ୍ରୋତର ତେବେ ହୁଏ ଅବସାନ ।
ଜପେ ଧ୍ୟାନେ ଏକାଗ୍ରତା ଲଭିଲେ ଏ ମନ
ସଂସାରର ସବୁ କଥା ହୁଏ ବିସ୍ମରଣ ।
କେବଳ ଇଷ୍ଟଙ୍କ ମୂର୍ତ୍ତି ନାଚଇ ମାନସେ,
ଘନ ଘନ ଭକ୍ତ ଚିତ୍ତ ଆନନ୍ଦେ ଉଲ୍ଲସେ ।
ପରିପକ୍ୱ ଧ୍ୟାନେ ଇଷ୍ଟ ମୂର୍ତ୍ତି ଗଲେ ହଜି,
ସ୍ଥିତାଧରେ ଭକ୍ତ ମନ ରହିଯାଏ ମଜ୍ଜି ।
ତା'ପରେ କେବଳ ହୁଏ ଆନନ୍ଦାନୁଭୂତି
ମନ-ହୀନ ଧ୍ୟାନର ଏ ଚରମ ବିଭୂତି ।
ଆନନ୍ଦ ଆନନ୍ଦ ଆଉ କେବଳ ଆନନ୍ଦ
ଭକ୍ତ ସାଧକର ପ୍ରାଣେ ଭରେ ମକରନ୍ଦ ।।
ଏ ମନ୍ତ୍ରରୁ ଜଣାଗଲା ମନ-ଯନ୍ତ୍ର ଥାଉ
ବ୍ରହ୍ମଙ୍କ ଚିନ୍ତନ କେବେ କରି ହୁଏ ନାହିଁ ।
ମନ ତ ଚଞ୍ଚଳ, ମନ ବୁଡ଼ାଏ ଭସାଏ,
ଏପରି ମନରେ କିଏ ବ୍ରହ୍ମଙ୍କୁ କି ପାଏ ?
ଆତ୍ମ-ଜ୍ୟୋତି ଯୁକ୍ତ ମନ କରଇ ମନନ
ସେ ମନ ଆତ୍ମାଙ୍କୁ ଅବା ଜାଣିବ କେସନ ?
ଧ୍ୟାନାଗ୍ନିରେ ମଳ-ମନ ଗଲେ ପୋଡ଼ି ଜଳି
ତେବେ ଆତ୍ମା ସ୍ୱତେଜରେ ଉଠିବେ ତ ଝଳି ।

**ମନ୍ତ୍ର ଛଅ**

***ଯଚ୍ଚକ୍ଷୁଷା ନ ପଶ୍ୟତି ଯେନ ଚକ୍ଷୂଂଷି ପଶ୍ୟତି ।***
***ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ॥***

ଯାହାଙ୍କୁ ନ ହୁଏ ଦେଖି ଏଇ ନୟନରେ,
ମାତ୍ରକ ନୟନ ଦେଖେ ଯାହାଙ୍କ ବଳରେ,
ତାହାଙ୍କୁ ଜାଣିବ ବ୍ରହ୍ମ;
କିନ୍ତୁ ସେ ନୁହନ୍ତି
ଆତ୍ମା ଭିନ୍ନ ଲୋକେ ଆଉ ଯାହାଙ୍କୁ ପୂଜନ୍ତି ॥

**କାହା ବଳରେ ତେବେ ଏ ନେତ୍ର ଦେଖେ :**

ପୂର୍ବ ମନ୍ତ୍ରେ କୁହାଯାଇଥିଲା ଏଇ ମନ,
ଆତ୍ମାଙ୍କୁ କଦାପି କରି ନ ପାରେ ମନନ ।
ଏ ମନ୍ତ୍ରେ ଓ ପର ମନ୍ତ୍ରେ ଏ କଥା ସୂଚିତ
ନ ଜାଣନ୍ତି ଏ ଅତ୍ମାଙ୍କୁ ଇନ୍ଦ୍ରିୟେ କିଞ୍ଚିତ ।
ଆତ୍ମାଙ୍କ ଜ୍ୟୋତିରେ ବରଂ ଇନ୍ଦ୍ରିୟ ନିକରେ
ଉଦ୍‌ଭାସିତ ହୋଇ ଜ୍ଞାନ ଲଭନ୍ତି ସତ୍ୱରେ ।

ଏ ଆତ୍ମାଙ୍କୁ ବ୍ରହ୍ମ ବୋଲି ଜାଣ ସୁନିଶ୍ଚିତ
କିନ୍ତୁ ସେ ନୁହନ୍ତି ବ୍ରହ୍ମଜ୍ଞାନେ ଯେ ପୂଜିତ ।

**ମନ୍ତ୍ର ସାତ**

**ଯଚ୍ଛ୍ରୋତ୍ରେଣ ନ ଶୃଣୋତି ଯେନ ଶ୍ରୋତ୍ରମିଦଂ ଶ୍ରୁତମ୍ ।**
**ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ॥**

ଯାହାଙ୍କୁ ନ ହୁଏ ଶୁଣି ଏଇ ଶ୍ରବଣରେ,
କର୍ଣ୍ଣ ଶୁଣି ପାରେ କିନ୍ତୁ ଯାହାଙ୍କ ବଳରେ
ତାହାଙ୍କୁ ଜାଣିବ ବ୍ରହ୍ମ;
କିନ୍ତୁ ସେ ନୁହନ୍ତି
ଆତ୍ମା ଭିନ୍ନ ଲୋକେ ଆଉ ଯାହାଙ୍କୁ ପୂଜନ୍ତି ॥

**କାହା ବଳରେ ତେବେ ଏ କର୍ଣ୍ଣ ଶୁଣେ :**

ଏକ ପରେ ଏକ ଏକ ଇନ୍ଦ୍ରିୟକୁ ନେଇ
ଆତ୍ମାଙ୍କ ବିଷୟେ ଗୁରୁ ଦିଅନ୍ତି ବୁଝେଇ ।
ମନ ଚକ୍ଷୁ ବାକ୍ ପରି ଏ କର୍ଣ୍ଣ ତେସନେ
ସ୍ୱ ଶକ୍ତିରେ କିଛି ଶୁଣି ନ ପାରଇ କ୍ଷଣେ ।
ଘେନି ଯିବା ପାଇଁ ଶିଷ୍ୟେ ଆତ୍ମାଙ୍କ ନିକଟେ
ମୁନୀଶ କରନ୍ତି ଚେଷ୍ଟା ଏପରି ନିରତେ ।
ସ୍ୱ ବିଷୟ ଶବ୍ଦ ଦିଗେ ଧାଇଁ ଯିବା ପାଇଁ
ନିର୍ଦ୍ଦେଶ ଦିଅନ୍ତି ଆତ୍ମା କର୍ଣ୍ଣ ପଛେ ଥାଇ ।
ଶୁଣିବାର କର୍ତ୍ତା ଯେଣୁ ଏ କର୍ଣ୍ଣ ନୁହଁଇ
ମୃତ ବ୍ୟକ୍ତି ତେଣୁ କର୍ଣ୍ଣେ କିଛି ନ ଶୁଣଇ ॥

## ମନ୍ତ୍ର ଆଠ

**ଯତ୍ ପ୍ରାଣେନ ନ ପ୍ରାଣିତି ଯେନ ପ୍ରାଣଃପ୍ରଣୀୟତେ,**
**ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ॥**

ପ୍ରାଣ ବାୟୁ ଦ୍ୱାରା ଯିଏ ନ ଚୁଅନ୍ତି ଭଳି
ଯାହା ଯୋଗୁଁ ପ୍ରାଣବାୟୁ କରେ ଚଳାଚଳି,
ତାହାଙ୍କୁ ଜାଣିବ ବ୍ରହ୍ମ;
କିନ୍ତୁ ସେ ନୁହଁନ୍ତି
ଆତ୍ମା ଭିନ୍ନ ଆଉ ଲୋକେ ଯାହାଙ୍କୁ ପୂଜନ୍ତି ॥

### ପ୍ରାଣବାୟୁ ଦ୍ୱାରା କଣ ସେ ଜଣା ଯାଇ ପାରନ୍ତି:

ବିଦ୍ୟାର୍ଥୀ ମାନସ ପଟେ ଆତ୍ମ-ଆଲିମ୍ପନ
ଦେବାକୁ ଗୁରୁଜୀ କେତେ କରନ୍ତି ଯତନ ।
ଏ ଦେହର ଗୋଟି ଗୋଟି ଇନ୍ଦ୍ରିୟକୁ ନେଇ
ପୁଣି ତହିଁ ସହ ମନ-ବୁଦ୍ଧିକୁ ମିଶେଇ
ପ୍ରମାଣ କରନ୍ତି ସେହି ଏ ସକଳେ ଜଡ଼
ଆତ୍ମ-ଶକ୍ତି ବିନା ନାହିଁ କାହାରି ତ ବଳ ।
ପଛ ମନ୍ତ୍ର ଗୁଡ଼ିକରୁ ଆମେ ଜାଣିଥାଉଁ
ମନ ଇନ୍ଦ୍ରିୟର କିଛି ନିଜ ଶକ୍ତି ନାହିଁ ।
ସ୍ୱଭାବେ ନିର୍ବଳ, ନାହିଁ ଜୀବନୀ ଶକତି
କିନ୍ତୁ ଜଣାଯାନ୍ତି ସତେ ଜୀବନ୍ତ ଅଟନ୍ତି ।
ସର୍ବେ ଜଡ଼, କିନ୍ତୁ କେହ୍ନେ ଚେତନ ପରାୟେ
ସେମାନଙ୍କ କାର୍ଯ୍ୟମାନ ଦେହେ ଚାଲିଥାଏ ?
ଏହି ତ ବିସ୍ମୟ ! ତେବେ ଏମାନଙ୍କୁ କିଏ,
ଜୀବନ୍ତ ପରାୟେ କରି ଏତେ ଶକ୍ତି ଦିଏ ?

## ଆତ୍ମାଙ୍କ ସଂସ୍ପର୍ଶେ ଆସି:

ସେ ଅଟନ୍ତି ଆତ୍ମା; ତାଙ୍କ ସଂସ୍ପର୍ଶରେ ଆସି
ମନ ଓ ଇନ୍ଦ୍ରିୟେ ତେଜ ଥାଆନ୍ତି ପ୍ରକାଶି ।
ଲୁହା ଖଣ୍ଡେ ନେଇ ଦେଖ, କି ତା' ପରିଣତି,
ନ ଥିଲା ତାହାରି କିଛି ଉତ୍ତାପ ଶକତି ।
ସେ ଲୁହା ଅନଳ ସ୍ପର୍ଶେ ଆସଇ ଯେ କ୍ଷଣେ
ଖଣ୍ଡେ ରଢ଼ ନିଆଁ ପରି ଝଟକେ ଯେସନେ ।
ଆମେ ଜାଣୁ ଏ ଉତ୍ତାପ ଲୁହାର ନୁହଁଇ
ଅଗ୍ନି ସଂସ୍ପର୍ଶରୁ ମାତ୍ର ଉତ୍ତାପ ଜନ୍ମଇ ।

ତାର ଖଣ୍ଡକର ଅଛି କି ଶକ୍ତି ନିଜର
'ସଅକ' ଦେବାକୁ ଦେହେ ପ୍ରଚଣ୍ଡ ପ୍ରବଳ ।
ଯଦି ସେ ଆମକୁ କେବେ 'ସଅକ' ଦିଅଇ
ତେବେ ତ ଜାଣିବ ତାହା ସାମାନ୍ୟ ନୁହଁଇ ।
ଲୁହା ତ ଶୀତଳ କାହୁଁ ପାଇବ ଉତ୍ତାପ
କେବଳ ତ କରେଣ୍ଟର ଏହି ପରତାପ ।
ନିଶ୍ଚୟ ସେ କରେଣ୍ଟର ସଂସ୍ପର୍ଶରେ ରହି,
ବିଦ୍ୟୁତ ବେଗରେ ଧକ୍କା ଆମକୁ ଦିଅଇ ।
ଚୈତନ୍ୟ ସଂସ୍ପର୍ଶେ ଆସି ଏ ଇନ୍ଦ୍ରିୟଗଣେ
ଦେହେ ନିଜ ପରାକ୍ରମ ଦେଖାନ୍ତି ତେସନେ ।

## ଆତ୍ମା ନୁହେଁ, ସାଦୃଶ୍ୟ ଆତ୍ମା :

ଆତ୍ମା, ମନ ଇନ୍ଦ୍ରିୟର ଯେଣୁ ଅଗୋଚର
ତାହାଙ୍କୁ ଜାଣିବା ତେଣୁ ଅଟଇ ଦୁଷ୍କର ।
ଦେଖନ୍ତି କେ ତାଙ୍କୁ, ବୁଝି ନାହିଁ, ଶୁଣି ନାହିଁ,
କେ ସମର୍ଥ ହେବ ତାଙ୍କୁ ବୁଝାଇବା ପାଇଁ ?

ଅଥଚ ସେ ସର୍ବବ୍ୟାପୀ, ସର୍ବ ଭୂତ ସ୍ଥିତ
ସେ ସର୍ବଜ୍ଞ, ଶକ୍ତିମାନ, କାରଣ ରହିତ ।
"ସାଦୃଶ୍ୟ ଆତ୍ମା"ଙ୍କୁ ମାତ୍ର ବୁଝା ଯାଇପାରେ
ନାନାଦି ତୁଳନାତ୍ମକ ଦୃଷ୍ଟାନ୍ତ ଆକାରେ ।
ଆତ୍ମାଙ୍କ ବିଷୟ ଯେତେ ଶ୍ରୁତି ସଂହିତାରେ,
ବର୍ଣ୍ଣିତ ହୋଇଛି ପୂର୍ବେ ଯେଉଁ ପରକାରେ,
ସବୁ ତ 'ସାଦୃଶ୍ୟ - ଆତ୍ମା' ପରେ ଆଧାରିତ
ପ୍ରକୃତ ଆତ୍ମା ବା ସତ୍ୟ ନୁହନ୍ତି ସେହି ତ ।
ବିଦ୍ୟାର୍ଥୀଙ୍କ ଆଗେ ଗୁରୁ ଏ ଆତ୍ମାଙ୍କୁ ଥାପି
ତାଙ୍କୁ ବୁଝାଇବା ନୁହେଁ ସମ୍ଭବ କଦାପି ।
ଆତ୍ମାଙ୍କର ପ୍ରଭାବକୁ ବିଭିନ୍ନ ପ୍ରକାରେ
ଇନ୍ଦ୍ରିୟାଦି କର୍ମ ପରି ବୁଝା ଯାଇପାରେ ।
ସାଦୃଶ୍ୟରେ, ପ୍ରଭାବରେ ଅବା ଆଭାସରେ
ଆତ୍ମାଙ୍କୁ କହନ୍ତି ଗୁରୁ ଶିଷ୍ୟଙ୍କ ଆଗରେ ।

ଇତିହାସେ ପଢ଼ିଥାଇଁ ମୋଗଲ ସମ୍ରାଟ,
ପରାକ୍ରମୀ ଆଲ୍ଲାଦିନ ଘେନି ସେନା ଥାଟ,
ଚିତୋର ବିଜୟ କରି ତହିଁ କଲେ ମନ
ପଦ୍ମିନୀଙ୍କ ରୂପ ଶୋଭା କରିବେ ଦର୍ଶନ ।
ପତିବ୍ରତା ରାଣୀ କିନ୍ତୁ କଲେ ଅସ୍ୱୀକାର
ବିଧର୍ମୀଙ୍କୁ ଦେବା ପାଇଁ ଦେଖା ଏ ପ୍ରକାର ।
ଶେଷେ ଏ ସିଦ୍ଧାନ୍ତ ହେଲା ସମ୍ରାଟ ଦର୍ପଣେ
ରାଣୀ ପ୍ରତିଛବି ମାତ୍ର ଦେଖିବେ ନୟନେ ।
ଶେଷରେ ତାହା ହିଁ ହେଲା, ବିଧର୍ମୀ ନୟନ
ପ୍ରକୃତ ପଦ୍ମିନୀ ରୂପ ଶୋଭା ବିମୋହନ -
ନିରେଖି ନ ପାରି ମାତ୍ର ଦେଖି ପ୍ରତିଛବି
ସାଦୃଶ୍ୟ-ଶୋଭାକୁ ଥିଲେ ହୃଦେ ଅନୁଭବି ।

ଆମ ଦେହଠାରୁ ଭିନ୍ନ ନୁହେଁ ଆମ ମୁହଁ
କିନ୍ତୁ ସେ ମୁହଁକୁ ଆମେ ଦେଖିଛେ କି କୁହ ?
ମୁହଁ ପ୍ରତିବିମ୍ବ ଯାହା ପଡ଼ଇ ଦର୍ପଣେ
ତାହାକୁ ତ ଆମେ ଦେଖିପାରୁ ଏ ନୟନେ ।
ଆମ ଏ ନୟନେ ଆମେ ଦେଖୁଛେ ଦୁନିଆ
ସେ ନେତ୍ରକୁ ଆମେ ଦେଖିପାରୁ ନାହୁଁ କିଆଁ ?
ସାଦୃଶ୍ୟ-ନେତ୍ରକୁ ମାତ୍ର ଦେଖୁଁ ଦରପଣେ;
ବ୍ରହ୍ମଙ୍କୁ ତେସନେ କେହି ନ ଦେଖେ ନୟନେ
ନୁହନ୍ତି ପ୍ରକୃତ ଆତ୍ମା କାହାକୁ ବିଦିତ,
ସାଦୃଶ୍ୟେ କେବଳ ସେହି ହୁଅନ୍ତି ବର୍ଣ୍ଣିତ ।

ଆମ ସମ ଆତ୍ମାଲୋକ-ବିଧର୍ମୀ ପାମରେ
ଆତ୍ମାଙ୍କ ଦର୍ଶନ ତେତ୍ନେ ହେବନି ସରଳେ ।
ସେ ଦର୍ଶନ ପାଇଁ ଲୋଡ଼ା ଯେଉଁ ଅନୁରାଗ
ନିଷ୍ଠା ବା ସାଧନା, ତାହା କରାଯାଉ ଆଗ ।
ବୀଣା ତାରେ ଅବା ଅତି କୋମଳ ଗଳାରେ
ବଜ୍ରର ଗର୍ଜନ କଣ କରାଯାଇ ପାରେ ?
ସେପରି ବଚନେ ଅବା କୌଣସି ଇଙ୍ଗିତେ
ଶୁଦ୍ଧ ଚେତନାକୁ ବୁଝା ନ ଯାଏ କିଞ୍ଚିତେ ।
ସୂର୍ଯ୍ୟ ପ୍ରତିବିମ୍ବ ଦେଖି ପାତ୍ରର ଜଳରେ
ସୂର୍ଯ୍ୟ ଜାଣି ଗଲୁ ବୋଲି ଭାବୁ କି ମନରେ ?
ସେ ସତ୍ୟଙ୍କୁ, ଚେତନଙ୍କୁ, ଆତ୍ମା ବା ବ୍ରହ୍ମଙ୍କୁ
ଜାଣିବାକୁ କିଛି ରାହା ନ ଦିଶେ ଆମକୁ ।
ମାତ୍ର ଆମେ, ଆମ ପାଇଁ, ଅନ୍ତରେ ଆମରି
ସେ ବ୍ରହ୍ମଙ୍କ ଉପଲବ୍ଧି ଅବା ପାରୁ କରି ।

## କେହ୍ନେ ବ୍ରହ୍ମ ଉପଲବ୍ଧି:

ଗୁରୁ ଉପଦେଶେ ଅବା ଶାସ୍ତ୍ର ଅଧ୍ୟୟନେ
ବ୍ରହ୍ମ ଉପଲବ୍ଧି କେହି କରେନି ଜୀବନେ ।
ପୁସ୍ତକରୁ ପଢ଼ି କିଏ ନଦୀ ସନ୍ତରଣ,
ଅବା ଶୁଣି "ସନ୍ତରଣ" ଶବଦ ଏସନ,
କେହି କି ନଦୀରେ ଯାଇ ପାରିବ ପହଁରି ?
ବ୍ରହ୍ମ ଉପଲବ୍ଧି କଥା ଅଟେ ସେହିପରି ।
ପହଁରିବା ପାଇଁ ଜଳେ ଝାମ୍ପ ପ୍ରୟୋଜନ;
ବ୍ରହ୍ମଜ୍ଞାନ ପାଇଁ ଲୋଡ଼ା ତେସନେ ସାଧନ ।
ଶୁଣିଲେ "ଗଞ୍ଜେଇ" କଥା ନିଶା ହୁଏ ନାହିଁ
ବହିରୁ ତା ପଢ଼ି ନିଶା ହୋଇଅଛି କାହିଁ ?
ଅବା ଗଞ୍ଜେଇକୁ ବାଟି ନେଇ ତଣ୍ଟି ଯାଏ
ଏଥିରେ କି କହ କା'ର ନିଶା ହୋଇଯାଏ ?
ଗଞ୍ଜେଇର ନିଶା ଜାଣିବାକୁ କଲେ ମନ
ବଟା-ଗଞ୍ଜେଇକୁ ନିଜେ କରିବ ସେବନ ।
ତେହ୍ନେ ବ୍ରହ୍ମ ଉପଲବ୍ଧି ପାଇଁ କଲେ ମନ
ସ୍ୱକୀୟ ସାଧନ ଧ୍ୟାନ ଅତି ପ୍ରୟୋଜନ ।
ଗୁରୁ ଉପଦେଶ ଶାସ୍ତ୍ର ସିଦ୍ଧାନ୍ତ ବା ମତ
ଦେଖାଏ ସାଧକ ଜନେ କେବଳ ତ ପଥ ।

ଯେ ସାଧକ ଯାଏ ବ୍ରହ୍ମ ଉପଲବ୍ଧି ପାଇଁ
ଉପଲବ୍ଧି ଅନ୍ତେ ସେ ତ ବାହୁଡ଼ଇ ନାହିଁ ।
ସମୁଦ୍ରକୁ ମାପିବାକୁ ଯେବେ କରି ମନ,
ଲୁଣର କଣ୍ଢେଇ କଲେ ସମୁଦ୍ରେ ଗମନ,
ସମୁଦ୍ରରୁ ସେ କଣ୍ଢେଇ ନ ଫେରେ ଯେପରି
ବ୍ରହ୍ମ ଉପଲବ୍ଧି ଜାଣ ଅଟଇ ସେପରି ।

## ତୂରୀୟ ଓ ସୁନିର୍ମଳ ମନ:

ଏହି ଏ ସଂସାରେ ଆମେ ଜାଣୁ ମନୋଗତେ
ଚେତନାର ତିନି ସ୍ତର ରହିଛି ଜଗତେ ।
ସେହି ତ ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି କଥିତ
ଏଇ ତିନି ସ୍ତରେ ଆମେ ରହୁ ଅବସ୍ଥିତ ।
ତିନି ଛାଡ଼ି ଆଉ ଏକ ସ୍ତର ଅଛି ରହି
ଯାହାକୁ "ତୂରୀୟ" ବୋଲି ଜ୍ଞାନୀ ଥା'ନ୍ତି କହି ।
ସବୁ ସ୍ତର ମଧ୍ୟେ ଏହା ଶ୍ରେଷ୍ଠ ବିବେଚିତ
ମନ କରାମତି ତହିଁ ନ ଥାଏ କିଞ୍ଚିତ ।
ପ୍ରଥମ ତିନୋଟି ସ୍ତରେ ଆମରି ଏ ମନ
ଦୋଷ ତ୍ରୁଟି ଠାରୁ ମୁକ୍ତ ନୁହେଁ କଦାଚନ ।
ତେଣୁ ଆମେ ନୋହୁଁ କ୍ଷମ ଦିବ୍ୟ ଦରଶନେ;
ମଳ-ଜଳେ ପ୍ରତିବିମ୍ବ ନ ପଡେ ଯେସନେ ।
ସୀମିତ ଇନ୍ଦ୍ରିୟ ଆଉ ସୀମିତ ମନରେ
ଦିବ୍ୟ ଜ୍ଞାନ ଲଭେ ନାହିଁ କେହି ଜଗତରେ ।
ଆତ୍ମ-ଦରଶନ ପାଇଁ ତେଣୁ ପ୍ରୟୋଜନ,
ଆମ ପାଇଁ ଅତି ସ୍ୱଚ୍ଛ ସୁନିର୍ମଳ ମନ ।
ପାରିଲେ ନିଜକୁ କରି ପବିତ୍ର ନିର୍ମଳ,
ତେବେ ବ୍ରହ୍ମ ଦରଶନ ହୋଇବ କେବଳ ।

'ମନ' ବୋଲି ଜାଣୁ ଯାହା ଆମ ହୃଦଗତେ,
ସେ ଷଷ୍ଠ ଇନ୍ଦ୍ରିୟ ବୋଲି ବିଦିତ ଜଗତେ ।
କିନ୍ତୁ ଯେଉଁ ମନ ଗୋଟି ତୀବ୍ର ସଚେତନ
ସେ ମନ ପାରଇ କରି ଆତ୍ମ ଦରଶନ ।
ମହା ଜାଗତିକ ଜ୍ଞାନେ ଯେ ମନ ଉଜ୍ଜ୍ୱଳ
ସେହି ତ "ମନର - ମନ" ଜାଣିବ କେବଳ ।

ସେହି ତ "ଚକ୍ଷୁର ଚକ୍ଷୁ" କର୍ଣ୍ଣର ସେ କର୍ଣ୍ଣ";
ସେ ଜଗତ ଆଦିମୂଳ ବ୍ରହ୍ମ ନାରାୟଣ ।
ବ୍ରହ୍ମଙ୍କ ବିଷୟେ ଯାହା ସବୁ ଏ ଅଧ୍ୟାୟେ
ବର୍ଣ୍ଣିତ ହୋଇଲା ପ୍ରଥମରୁ ଶେଷ ଯାଏଁ,
ତାହା ଶୁଣି ଶିଷ୍ୟ କାଳେ ଭାବିବେ ମନରେ -
-"ମୁହିଁ ତ ବ୍ରହ୍ମଙ୍କୁ ବୁଝି ଗଲିଣି ଅନ୍ତରେ ।
ଆଉ କି ସାଧନ ଧ୍ୟାନ ମୋର ପ୍ରୟୋଜନ
ଗୁରୁଙ୍କୁ ବି ପଚାରିବି ଅଧିକ କଅଣ ?"
ତୃପ୍ତିରେ ଶିଷ୍ୟଙ୍କ ମୁଖେ ଫୁଟେ ପ୍ରସନ୍ନତା
ତା' ଦେଖି ସଦ୍‌ଗୁରୁ ତହୁଁ କହିଲେ ଏ କଥା .....

* * *

# ଦ୍ୱିତୀୟ ଖଣ୍ଡ

## (ବ୍ରହ୍ମଜ୍ଞାନ ଦ୍ୱାରା ଅମୃତତ୍ୱ ଲାଭ)

**ମନ୍ତ୍ର ଏକ**

***ଯଦି ମନ୍ୟସେ ସୁବେଦେତି***
***ଦଭ୍ରମେବାପି ନୂନଂ ତ୍ୱଂ ବେତ୍ଥ ବ୍ରହ୍ମଣୋ ରୂପମ୍ ।***
***ଯଦସ୍ୟ ବେଦେଷ୍ୱଥ ନୁ ମୀମାଂସ୍ୟମେବ ତେ ମନ୍ୟେ ବିଦିତମ୍ ॥***

ଆଚାର୍ଯ୍ୟ କହିଲେ, ଯଦି ଭାବୁଛ ମନରେ
'ଏ ବ୍ରହ୍ମଙ୍କୁ ଜାଣିଅଛ ଉତ୍ତମ ରୂପରେ' ।
ତେବେ ତୁମେ ପ୍ରକୃତରେ ବ୍ରହ୍ମଙ୍କ ବିଷୟ
ଜଣାଯାଏ ଅଳ୍ପ କିଛି ଜାଣିଛ ନିଶ୍ଚୟ ।
କାରଣ ତୁମଠି ଆଉ ଦେବଙ୍କ ଭିତରେ
ବ୍ରହ୍ମଙ୍କ ପ୍ରକାଶ ଥାଏ ମାତ୍ର କିଞ୍ଚିତରେ ।
ତେଣୁ ଏବେ ମଧ ବ୍ରହ୍ମ ତୁମ ନିକଟରେ
ବିଚାର୍ଯ୍ୟ ଅଟନ୍ତି ବୋଲି ଭାବ ହୃଦୟରେ ।
ତା' ଶୁଣି ବିଚାର କରି ଶିଷ୍ୟ ହୃଦଗତେ
କହିଲେ, "ଭାବୁଛି ବ୍ରହ୍ମ ବିଦିତ ତ ମତେ ॥"

**ବ୍ରହ୍ମଙ୍କ** ବିଷୟ ଶୁଣି ଶିଷ୍ୟ ଏକ ମନେ
ଉକୁଟିଲା ସନ୍ତୋଷର କଣିକା ବଦନେ ।
ତୃପ୍ତି ଆତ୍ମ-ବିଶ୍ୱାସରେ ବୁକୁ ଗଲା ଭରି -
ଶିଷ୍ୟଙ୍କର ଏ ଭାବକୁ ଗୁରୁ ଲକ୍ଷ୍ୟ କରି,
ସତର୍କ କରାଇ ତାଙ୍କୁ କହିଲେ ସେ କ୍ଷଣେ -
''ବ୍ରହ୍ମ''ଙ୍କୁ ଜାଣିଛ ବୋଲି ଯଦି ଭାବ ମନେ,

ତେବେ ତୁମଠାରୁ ବଳି ନିର୍ବୋଧ ଜଗତେ
ଆଉ କିଏ ଥିବ ବୋଲି ନ ଆଶେ ପରତେ ।

ସେ 'ଚକ୍ଷୁର ଚକ୍ଷୁ' ବୋଲି କହିଛି ଏସନ,
ଦେବତାଙ୍କ ଦିବ୍ୟ ଦେହେ ସେ ତ ଚଇତନ୍ୟ;
ମଣିଷ ଶରୀରେ ଅବା ଦେବତା ଦିହରେ
ଚୈତନ୍ୟ ସ୍ୱରୂପେ ରହି ଯେ ବ୍ରହ୍ମ ବିହରେ
ସେ ସ୍ୱରୂପ ଅତି ଅଳ୍ପ ବୋଲି ତୁମେ ଜାଣ
ପ୍ରକୃତ ସ୍ୱରୂପ ତହିଁ ନୁହଁଇ ପ୍ରମାଣ ।
ସେ ତ ଅନ୍ତହୀନ, ଚିରନ୍ତନ, ଭୂମା ସେହି
ସେ ତ ଅଦ୍ୱିତୀୟ ନାହିଁ ଦ୍ୱିତୀୟ ଯେ କେହି ।
ବିଦ୍ୟୁତ୍ ଝଲକ ପରି ପ୍ରଚଣ୍ଡ ଝଲକ
ଅଳ୍ପ ବୁଦ୍ଧି ଜ୍ଞାନେ ତାଙ୍କୁ କଳିବ କେମନ୍ତ ?
ଗୁରୁଜୀ କହନ୍ତି ତେଣୁ ଶିଷ୍ୟ ମୁଖେ ଚାହିଁ,
ସ୍ୱତଃସ୍ଫୂର୍ତ୍ତ ଜ୍ଞାନ ତବ ଏବେ ହୋଇନାହିଁ ।
ଏଥିରୁ ଭାବୁଛ ଯଦି ବ୍ରହ୍ମ ସୁବିଦିତ
ତୁମ ପାଶେ, ତେବେ ଏହା ଭ୍ରମ ସୁନିଶ୍ଚିତ ।
ସିଦ୍ଧାନ୍ତ ବା ମତବାଦ ଶୁଣିଦେଇ କର୍ଣ୍ଣେ
ବ୍ରହ୍ମଙ୍କୁ ଜାଣନ୍ତି ନାହିଁ କେହି ଏ ଭୁବନେ ।
ଏଥିପାଇଁ ପ୍ରୟୋଜନ ତୀବ୍ର ଅନୁଭୂତି
ଧ୍ୟାନେ ଅବା ମିଳିପାରେ ସେ ଆତ୍ମ-ବିଭୂତି ।

ପୂର୍ବ ଅଧ୍ୟାୟରେ ଏହା ହୋଇଛି ବର୍ଣ୍ଣିତ,
ଇନ୍ଦ୍ରିୟଗୋଚର ବ୍ରହ୍ମ ନୁହନ୍ତି କିଞ୍ଚିତ ।
ନୟନ ନ ଯାଏ ତହିଁ, ନ ଯାଏ ବଚନ
ତହିଁ ନ ପାରଇ ଯାଇ ତିଳେ ଏଇ ମନ ।
ଜଣାଠୁଁ ପୃଥକ ସେହି, ଅଜଣା ଊର୍ଦ୍ଧ୍ୱରେ
ତେଣୁ ଶଙ୍କା ଉପୁଜଇ ଗୁରୁଙ୍କ ମନରେ ।

ଚେତନାକୁ ସୂକ୍ଷ୍ମତର କରିବା ଆଶାରେ
ସତର୍କ କରାନ୍ତି ଗୁରୁ ଶିଷ୍ୟଙ୍କୁ ଏଠାରେ ।
ତୁମ ହୃଦେ ଏପରି କି ଦେବଗଣ ହୃଦେ,
ଯେ ଭଳି ଭାବରେ ବ୍ରହ୍ମ ହୋଇଥାନ୍ତି ଉଦେ,
ତାହା ତ ସୀମିତ ଜାଣ, ତା' ଉପାଧିଗତ
ପ୍ରକୃତ ସ୍ୱରୂପ ତେଣୁ ହୁଅ ଅବଗତ ।

## ବ୍ରହ୍ମ-ଉପଲବ୍ଧି ସହଜ ନୁହଁ :

ବ୍ରହ୍ମଙ୍କ ପ୍ରକାଶ ରୂପ ଅସୀମ ଅନନ୍ତ
ଇନ୍ଦ୍ରିୟ ବୃତ୍ତିରେ ତାଙ୍କୁ କଳିବ କେମନ୍ତ ?
ନିଜକୁ ଅନନ୍ତ ରୂପେ ବିଶ୍ୱେ କରି ବ୍ୟାପ୍ତ
ଦେଶ କାଳ ଊର୍ଦ୍ଧ୍ୱେ ସେ ତ ନିତ୍ୟ ପ୍ରତିଭାତ ।
ନାମ ରୂପହୀନ ସେହି ବ୍ରହ୍ମଙ୍କୁ କିପରି
ସହଜେ ପାରିବ କିଏ ଉପଲବ୍ଧି କରି ?
ଯଦି ଜଣେ ସାଧାରଣ ଗାଉଁଲୀ ମଣିଷ
ଏକ ଉଚ୍ଚ କୋଠା ତଳେ ହୋଇ ଉପସ୍ଥିତ,
କହେ ଗର୍ବେ ସେହି କୋଠା ତାକୁ ସୁବିଦିତ
ତେବେ ଏହି ଉକ୍ତି ତାର ମିଥ୍ୟା ସୁନିଶ୍ଚିତ ।
ସେ କୋଠାର ସବୁ ତାକୁ ଜଣା ହେବା ପାଇଁ
ଭିତରେ ପଶିବା ଛଡ଼ା ଅନ୍ୟ ବାଟ ନାହିଁ ।
ପଶିବ ଦେଖିବ ବୁଲି କୋଠରୀ କୋଠରୀ
ତେବେ କୋଠା ଜ୍ଞାନ ସିନା ମନେ ଯିବ ଭରି ।
ତେହ୍ନେ ବ୍ରହ୍ମ ହେବା ପାଇଁ ହୃଦେ ଅନୁଭୂତ
ପ୍ରୟୋଜନ ହୋଇଥାଏ ସାଧନା ବହୁତ ।

କେ ଚାଟଶାଳୀକି ଯାଇ ଖଡ଼ି ଛୁଇଁ ଦେଇ,
ଚଅକ ଖଡ଼ିରେ ମୋଟା ମୁଣ୍ଡୁଳା ବୁଲେଇ;

ଜ୍ଞାନୀ ବା ପଣ୍ଡିତ କେବେ ହୋଇଯାଏ ନାହିଁ
ବହୁ ଶ୍ରମ ସାଧନା ତ ଲୋଡ଼ା ସେଥିପାଇଁ ।
ଅନୁକୂଳ କରି ଧାନ ବୁଣି ଦେଲେ କ୍ଷେତେ,
ଅମଳ କି ହୋଇଯାଏ ଭାବି ଥିବ ଯେତେ ?
ତା'ପାଇଁ ବର୍ଷକ ଶ୍ରମ, ମନ ପ୍ରୟୋଜନ
ଧନ କି ମିଳଇ କେବେ ନ କରି ଯତନ ?

ସମୁଦ୍ରର କୂଳେ ଜଣେ ଠିଆ ହୋଇ କେହି
ଭାବେ କି ସମୁଦ୍ର-ଜ୍ଞାନ ପାଇଗଲା ସେହି ?
ଜ୍ଞାନ ଏତେ ଶସ୍ତା ନୁହେଁ କରି ଦେଲେ ମନ
ରୂପ ଧରି ସେ ହଠାତ୍ ଦେବେ ଦରଶନ ।
ଅନୁବାଦ କରିଦେଲେ''ଈଶା''''କେନ''''କଠ''
କେ ଯଦି କହିବ ହେଲି ଶ୍ରୁତି ବିଶାରଦ,
ଥବା ଜ୍ଞାନୀ ହେଲି ବୋଲି କରିବ ବଡେଇ
ମୂର୍ଖ କହି ସର୍ବେ ତେବେ ଦେବେ ଘଉଡ଼େଇ ।
ବ୍ରହ୍ମ -ବିଦ୍ୟା ପାଦେ କରି ନମ୍ର ନିବେଦନ
କେବଳ ସେ ପଥେ ଆମେ କରିବା ଗମନ ।
ବେଦ ଜ୍ଞାନ ଗାରିମାରେ କେ ଆକାଶେ ଉଡ଼େ
କେ ଅଦୃଶ୍ୟ ରହି ରସ-ପାରାବାରେ ବୁଡ଼େ ।
ଏକା କଥା, ବ୍ରହ୍ମଙ୍କୁ ତ କେହି ଜାଣି ନାହିଁ
ମୁଁ ଜାଣିଚି ବୋଲି କିଆଁ କରିବି ବଡ଼ାଇ ?
ଯେଉଁ ପଟୁ ଖାଇଲେ ବି ମିଶ୍ରି ମିଠା ଲାଗେ,
ତଫାତ ଖାଉଚି କିଏ କେତେ ଅନୁରାଗେ ।
ବ୍ରହ୍ମଙ୍କ କରୁଣା କୃପା ପାଇଁକି ସାଧନା
କରିବାକୁ କାହାକୁ କେ କରିଦେବ ମନା ?

## ଆଧାର ଓ ଆତ୍ମା:

ଅନୁଭୂତି ଦ୍ୱାରା ଅବା ନିର୍ବିକଳ୍ପ ଧ୍ୟାନେ,
ବିଦିତ ହୁଅନ୍ତି ଆତ୍ମା ସ୍ୱତଃସ୍ଫୂର୍ତ୍ତ ଜ୍ଞାନେ ।
ଦେଖିବା ଶୁଣିବା ଆଦି ଇନ୍ଦ୍ରିୟର ଜ୍ଞାନେ
"ସାଦୃଶ୍ୟ ଆତ୍ମା" କୁ ମାତ୍ର କେହି ଅବା ଜାଣେ ।
ଶୁଦ୍ଧ ଆତ୍ମା ଯେଣୁ ରୂପ ନାମର ଅତୀତ
ତେଣୁ ସେ ଇନ୍ଦ୍ରିୟ ଜ୍ଞାନେ ନୁହନ୍ତି ବିଦିତ ।
ବ୍ୟାପ୍ତ ହୋଇଥିଲେ ଆତ୍ମା ନାମେ ଅବା ରୂପେ
ସେ ସତ୍ତା ହୁଅନ୍ତି ଜଣା ଜୀବନ୍ତ ସ୍ୱରୂପେ ।
ଏ ଜଡ଼ ଶରୀରେ ଯେବେ ବ୍ରହ୍ମ ଥାଏ ରହି
'ଦିବ୍ୟ-ଆତ୍ମନ୍' ବୋଲି ତାଙ୍କୁ ଆମେ ଥାଉ କହି ।

ଯେଉଁ ପ୍ୟାଣ୍ଟ କୋର୍ଟ ଝୁଲେ କାନ୍ଥର କୀଳକେ,
ରୂପ ନାମ ତାର ଯାହା ଥାଉ ବା ପଲ୍ଲକେ,
ଥାଉ ତାର ବାହୁ ପାଦ ପିଠି ଛାତି ଯାହା,
ରାଜକୀୟ ଜରିଯୁକ୍ତ ହେଉ ପଛେ ତାହା,
ଘର ଜଗୁଆଳୀ କେବେ ପାଶେ ଆସି ତାର
ଦିଏନି ସାଲ୍ୟୁଟ କରେ ନାହିଁ ନମସ୍କାର ।
ତୁମର ସେ ଯେଉଁ କୋଟ ଝୁଲେ କୀଳକରେ,
ତୁମ ପତ୍ନୀ କେବେ ତାକୁ ଆଲିଙ୍ଗନ କରେ ?
ଅବା କାନ୍ଥେ ଦେଖି ତୁମ ଝୁଲା ଟ୍ରାଉଜର
ତୁମର ପିଲେ କି ତାକୁ କରନ୍ତି ଆଦର ?

ଜରିପିନ୍ଧା କୋଟ ପ୍ୟାଣ୍ଟ ଅବା ଟ୍ରାଉଜର
ଏ ବୁହାଇ ପାରିବେ କି ମମତାର ଝର ?
କେବଳ ପିନ୍ଧିବା ଲୋକ ତାହା ପିନ୍ଧିଥିଲେ
କେତେ ପ୍ରାଣବନ୍ତ ହେଉ ଉଠଇ ଏଥିରେ ॥

ତେସନେ ଏ ଦେହ ଲଭେ ଗୌରବ ଆଦର
ଯେ ଯାଏଁ ଅଛନ୍ତି ଦେହେ ହୃଦୟ-ଈଶ୍ୱର ।
ଆଧାର ବିହୁନେ ଯେହ୍ନେ ନ ରହେ ପାନୀୟ
ଆତ୍ମା ନ ରହନ୍ତି ତେହ୍ନେ ନ ଥିଲେ ଟି ଦିହ ।
ଏ ଦେହ-ମନ୍ଦିରେ ଯେବେ ଆତ୍ମା ବିଦ୍ୟମାନ
ତେବେ ସେ ବୋଲାଏ ପୂତ ପବିତ୍ର ମହାନ ।
ସେ ମନ୍ଦିରୁ ଆତ୍ମା ଯେବେ ଯାଆନ୍ତି ବାହୁଡ଼ି
ତେବେ ସେ ମନ୍ଦିର କ୍ଷଣେ ପଡ଼ଇ ଭୁଷୁଡ଼ି ।

## ଆତ୍ମା ଯେବେ ଏକ; ଆମେ କିଆଁ ଭିନ୍ନ:

ଏଠି ଏକ ପ୍ରଶ୍ନ ମନେ ହୁଅଇ ଉଦିତ,
ଏକ ଆତ୍ମା ଯଦି ସର୍ବ ଭୂତେ ଅବସ୍ଥିତ,
ଏକ ଆତ୍ମା ଯଦି ବିଜେ ସଭିଙ୍କ ଅନ୍ତରେ
ତେବେ ବିଷମତା କିଆଁ ଏତେ ପରସ୍ପରେ ?

ପାଖରେ ଏଇ ଯେ ଅଛି କାନ୍ଥ ଅବସ୍ଥିତ
ସମ ଭାବେ ତାହା ସୂର୍ଯ୍ୟାଲୋକେ ଆଲୋକିତ ।
କିଏ ଯଦି ଧରି ଏକ ଦର୍ପଣ ହାତରେ,
ସୂର୍ଯ୍ୟଙ୍କୁ ଦେଖାଇ ରଶ୍ମି ପକାଏ କାନ୍ଥରେ
ତେବେ ବାରି ହୋଇ ଅନ୍ୟ ଅଂଶଠୁଁ ସେ ସ୍ଥାନ
ଅତ୍ୟନ୍ତ ପ୍ରଖର ତେଜେ ହୁଏ ଦୀପ୍ତିମାନ ।
ସେ ଆଲୋକ -ସ୍ଥାନ ଘୁଞ୍ଚେ ହଲାଇଲେ ହାତ
ଆଲୋକିତ କାନ୍ଥ ପରେ ହୁଏ ପ୍ରତିଭାତ ।
ଦର୍ପଣ କିରଣମାଳା କେବଳ ବଢ଼ାଏ
ଆଲୋକର ପ୍ରଖରତା କାନ୍ଥର ଯା ଥାଏ ।
ସୂର୍ଯ୍ୟାଲୋକ ପରି ସର୍ବବ୍ୟାପୀ ଆତ୍ମା ଏହି
ସବୁଠି ସମାନ ଭାବେ ରହିଛନ୍ତି ସେହି ।

ପ୍ରତିବିମ୍ବ ଆସ୍ତରଣ ଯାହାର ଯେପରି
ସେହିପରି ଭାବେ ଆତ୍ମା ଉଠନ୍ତି ଉଜ୍ଜ୍ୱଳି ।
ଦର୍ପଣର ମଳିନତା ସ୍ୱଚ୍ଛତା କାରଣେ
ପ୍ରତିବିମ୍ବ ତେଜ ଭିନ୍ନ ହୁଅଇ ଯେସନେ,
ତେହ୍ନେ ଅନ୍ତଃକରଣର ଭିନ୍ନତା ସକାଶେ
ଆମେ ସବୁ ଭିନ୍ନ ଭିନ୍ନ ଏକୁ ଆନ ପାଶେ ।

## ଆତ୍ମାଙ୍କୁ ନୁହେଁ; କେବଳ ସାଦୃଶ୍ୟ - ଆତ୍ମାଙ୍କୁ ଜାଣିହୁଏ:

କୌଣସି ବସ୍ତୁକୁ ତୁମେ ଉତ୍ତମ ରୂପରେ
ଜାଣିଅଛ ବୋଲି କହିପାର ସହଜରେ ।
ମାତ୍ରକ ଆତ୍ମାଙ୍କୁ ତୁମେ ଜାଣ ଭଲ କରି
ଏପରି କହିବା ଭ୍ରମ ଅଟଇ ତୁମରି ।

ଅଗ୍ନି ସିନା ଜାଳି ପାରେ ପଦାର୍ଥ ସକଳ,
କିନ୍ତୁ ଅନଳକୁ ଜାଳି ପାରେ କି ଅନଳ ?
ସକଳ ପଦାର୍ଥେ ସିନା ଆର୍ଦ୍ର କରେ ଜଳ
କିନ୍ତୁ ଜଳ ନ ଭିଜାଏ ଜଳକୁ କେବଳ ।
ଆତ୍ମା ଜ୍ଞାନ ପ୍ରକାଶକ ଅଟନ୍ତି ତେସନେ
ସେ ଜ୍ଞାନମୟଙ୍କୁ ଜ୍ଞାନ ଜାଣିବ କେସନେ ?

ଖେଳ ପଡ଼ିଆରେ ସିନା ଖେଳନ୍ତି ପିଲାଏ,
ସେ ପଡ଼ିଆ ଥାଏ ପଡ଼ି ଶୋଇବା ପରାଏ ।
ପିଲେ ଖେଳିବାକୁ ମାତ୍ର ଏ ଖେଳ ପଡ଼ିଆ
ତା' ଉପରେ ସେ ଧାଇଁବେ ମାରୁଥିବେ ଡିଆଁ ।
ଏ ପଡ଼ିଆ ଜ୍ଞାନ-ଘନ ପରମ ଈଶ୍ୱର
ଜ୍ଞାନ ଗଳି-ପଥ ମାତ୍ର ଇନ୍ଦ୍ରିୟ ନିକର ।

ଖୋଜନ୍ତି ସେ ପଡ଼ିଥାରେ ତାଙ୍କୁ ନ ଜାଣନ୍ତି,
ତାଙ୍କୁ ଜାଣିବାକୁ ନାହିଁ ଯାଙ୍କର ଶକତି ।

ଦେଖିବାର ବସ୍ତୁ କିଛି ନୁହନ୍ତି ଏ ବ୍ରହ୍ମ
ବ୍ରହ୍ମ ସ୍ୱତଃସ୍ଫୂର୍ତ୍ତ ଜ୍ଞାନ, ଅନ୍ତର ସ୍ଫୁରଣ ।
ତେଣୁ ତାଙ୍କୁ ସେ ଅଜଣା, ଯେ ତାଙ୍କୁ ଜାଣନ୍ତି
ତାଙ୍କୁ ଜଣା, ଯିଏ ତାଙ୍କୁ "ଜାଣିନି" କହନ୍ତି ।
ଏକମାତ୍ର ଜ୍ଞାତା ବ୍ରହ୍ମ ଅଦ୍ୱିତୀୟ ସେହି,
ତେଣୁ ସେ ବ୍ରହ୍ମଙ୍କୁ ଜାଣି ନ ପାରନ୍ତି କେହି ।
ସେ ଜାଣନ୍ତି ସମସ୍ତଙ୍କୁ ତାଙ୍କୁ କେ' ଜାଣିବେ ?
କ୍ରିୟା କି କରଣ କେବେ କର୍ତ୍ତା ବୋଲାଇବେ ?

ସତର୍କ କରାଇ ଗୁରୁ କହନ୍ତି ସେ ପାଇଁ-
ଆତ୍ମାଙ୍କୁ ଜାଣିଚି ବୋଲି ଯେ କରେ ବଡ଼ାଇ,
ପ୍ରକୃତରେ ସେ ତାହାଙ୍କୁ ଜାଣେ ନାହିଁ ତିଳେ
ଆତ୍ମା ନ ପଡନ୍ତି ଜଣା ଇନ୍ଦ୍ରିୟ ଭିତିରେ ।

ଦ୍ୱିଧାହୀନ ଭାବେ ଶିଷ୍ୟ ଗୁରୁଙ୍କ ବଚନ
ଆଗରୁ ତ ଶୁଣିଥିଲେ ଦେଇ ମନ କର୍ଣ୍ଣ ।
ପୁଣି ସତ୍ୟ ମଣିଥିଲେ କଥାକୁ ତାଙ୍କରି
ଏବେ ସେ ଭାବନ୍ତି ବ୍ରହ୍ମେ ଜାଣିବେ କିପରି ?
ଗୁରୁ ବଚନକୁ ହୃଦେ ଉପଲବ୍ଧି କରି
ବ୍ରହ୍ମଙ୍କ ସ୍ୱରୂପ ନିଜେ ଜାଣିବେ ଯେପରି,
ଧ୍ୟାନେ ସେ ଅନ୍ତର ତହୁଁ କଲେ ଆଲୋଡ଼ନ;
କିଛି କାଳେ ପାଇଲେ ସେ ନୂତନ ଦର୍ଶନ ।
ତହୁଁ ଗୁରୁ ସନ୍ନିଧାନେ ହୋଇ ଉପସ୍ଥିତ
ଜିଜ୍ଞାସା କରିଲେ ତତ୍ତ୍ୱ ଆବେଗ ସହିତ ।

**ମନ୍ତ୍ର ଦୁଇ**

***ନାହଂ ମନ୍ୟେ ସୁବେଦେତି ନୋ ନ ବେଦେତି ବେଦ ଚ ।***
***ଯୋ ନସ୍ତଦ୍‌ବେଦ ତଦ୍‌ବେଦ ନୋ ନ ବେଦେତି ବେଦ ଚ ॥***

"ବ୍ରହ୍ମଙ୍କୁ ଜାଣିଛି ବୋଲି ଉତ୍ତମ ଭାବରେ"
ଏପରି ମୁଁ ଭାବୁନାହିଁ କଦାପି ମନରେ ।
"ଅବା ମୁଁ ତାହାଙ୍କୁ ଜାଣି ନାହିଁ" - ନ ଭାବଇ ।
ଆମ ମଧେ ତାଙ୍କୁ ଯିଏ ପ୍ରକୃତ ଜାଣଇ,
"ମୁଁ ଜାଣେ ମୁଁ ଜାଣେ ନାହିଁ" - କଥାର ମରମ,
ସେ କେବଳ ଜାଣିବାକୁ ହୋଇ ପାରେ କ୍ଷମ ।

ଏ ମନ୍ତ୍ର ବିରୋଧାତ୍ମକ ଯଦି ବା ଲାଗଇ
କିନ୍ତୁ ପ୍ରକୃତରେ ତାହା ସେପରି ନୁହଁଇ ।
ବ୍ରହ୍ମଙ୍କୁ ଜାଣିଛେ ଆମେ ପୂର୍ବ ଅଧ୍ୟାୟରେ
"ଜଣାଠୁଁ ପୃଥକ ସେହି, ଅଜଣା ଊର୍ଦ୍ଧ୍ୱରେ ।"
ଏହା ଉପଲବ୍ଧି କରି ଶିଷ୍ୟ ହୃଦୟରେ
ଗୁରୁଙ୍କୁ କହନ୍ତି ଅତି ବିନୀତ ଭାବରେ -

**ବ୍ରହ୍ମ ଜ୍ଞାତ ନୁହନ୍ତି :**

ଏ ନଶ୍ୱର ମଣିଷର ଧାରଣା ସୀମାରେ
ବ୍ରହ୍ମ ଜ୍ଞାତ ବୋଲି କେବେ ମନେ ନ ବିଚାରେ ।
କାରଣ ମୁଁ ବୁଝିଅଛି ବିଚାର ସହିତ
ବ୍ରହ୍ମ ଯେ ଇନ୍ଦ୍ରିୟ ମନ ବୁଦ୍ଧିର ଅତୀତ ।
ଭୌତିକ ସଂସାର ଚିନ୍ତା ଚେତନାକୁ ଧରି
ବ୍ରହ୍ମଙ୍କ ସ୍ୱରୂପ ମୁହିଁ ଜାଣିବି କିପରି ?

ତେଣୁ ମୁଁ ବ୍ରହ୍ମଙ୍କୁ ଜାଣେ ଉତ୍ତମ ରୂପରେ
ଏପରି ଭାବନା କେବେ ନ କରେ ମନରେ ।

## ବ୍ରହ୍ମ ଅଜ୍ଞାତ ବୋଲି କହି ହୁଏନି :

ତେବେ ଉଚ୍ଚତର ଚିନ୍ତା ଚେତନା ଭିତ୍ତିରେ,
କହି ନ ପାରିବି କେବେ ମୋ ବୁଦ୍ଧି ବୃତ୍ତିରେ,
"ମୁଁ ବ୍ରହ୍ମଙ୍କୁ ଜାଣି ନାହିଁ" ମୋର ହୃଦୟରେ
ଯେ ହେତୁ "ମୁଁ", ମୋର ସତ୍ତା ଅଛି ଜଗତରେ ।
ସେ ବ୍ରହ୍ମଙ୍କୁ ଖୋଜି ପାରେ ମୁହିଁ ମୋ ଅନ୍ତରେ
ଯେଣୁ ବ୍ରହ୍ମ ମୋ ସତ୍ତାର ମୂଳ ପ୍ରକୃତରେ ।
ଜଗତର ଯାହା କିଛି ଜାଣିବା ନିମନ୍ତେ
ବ୍ରହ୍ମ ହିଁ କେବଳ ଲୋଡ଼ା ହୁଅନ୍ତି ଅଗ୍ରତେ ।
ଜାଣିବା ଦେଖିବା କର୍ଣ୍ଣେ ଶୁଣିବା ଶକତି
ଅବା ହସ୍ତେ କଲେ କର୍ମ, ପାଦେ କଲେ ଗତି,
ସବୁରି ପାଇଁକି ବ୍ରହ୍ମ ହୁଅନ୍ତି କାରଣ
ବ୍ରହ୍ମ ବିନା ନାହିଁ ଜୀବ ଜଗତ କଥଣ ।
ଚୌଦିଗେ ଯେ ବ୍ରହ୍ମ ପୁଣି ଯେ ମୋର ଶକତି
ସେ ବ୍ରହ୍ମ କି କେବେ କ'ଣ ଅଜଣା ହୁଅନ୍ତି ?
ତେଣୁ ମନେ ହୁଏ, ବ୍ରହ୍ମ ମୋର ପାଶେ ଜଣା
ମୋ କାରଣ କେହ୍ନେ ହେବେ ମୋ ପାଇଁ ଅଜଣା ?

ମୁଁ ଯଦିବା ଜାଣି ନାହିଁ ବୁଦ୍ଧିରେ ମୋହର
ଅଛି ଯେଉଁ ଅସ୍ଥିତ୍ୱର ଅନନ୍ତ ସାଗର ।
କାରଣ ମୋ ବୁଦ୍ଧି ଜ୍ଞାନ କେବଳ ସୀମିତ
ସେ ଇନ୍ଦ୍ରିୟଗ୍ରାହ୍ୟ ଦ୍ରବ୍ୟେ-ତାହା ମୋ ବିଦିତ ।
ବ୍ରହ୍ମ ଉପଲବ୍ଧି ହେବା ପାଇଁକି ଅନ୍ତରେ
ସାଧାରଣ ଜ୍ଞାନ ସୀମା ଟପିବାକୁ ପଡ଼େ ।

ଆତ୍ମ-ଦରଶନ ଆଶେ ଅଭିଳାଷୀ ଜନ
ପାର୍ଥିବ ସଂସାରୁ ଉର୍ଦ୍ଧ୍ୱେ କରନ୍ତି ଗମନ ।
ଅତୀନ୍ଦ୍ରିୟ ଜଗତରେ କରି ବିଚରଣ
ଥବା ସେ ପାରନ୍ତି କରି ବ୍ରହ୍ମ ଦରଶନ ।

## ବିଜ୍ଞାନ ସୀମିତ :

ଜଡ଼ ବିଜ୍ଞାନର ପର୍ଯ୍ୟବେକ୍ଷଣ ଜଗତେ,
ରହଇ ଇନ୍ଦ୍ରିୟ ସ୍ତରେ ସୀମିତ ନିରତେ ।
ମନ ବୁଦ୍ଧି ଇନ୍ଦ୍ରିୟର ଅତୀତ ଟି ଯାହା,
ଏ ଜଡ଼ ବିଜ୍ଞାନୀ କେବେ ନ ଦେଖଇ ତାହା ।
ଜଡ଼ ସଦା ବଦଳଇ ବଢ଼ଇ ଛିଡ଼ଇ
ଜଡ଼ରେ ସିଦ୍ଧାନ୍ତ ତେଣୁ ସ୍ଥିର ନ ରହଇ ।
ପ୍ରଥମେ ବିଜ୍ଞାନ କଲା ଅଣୁ ଆବିଷ୍କାର
ତାହାପରେ ପରମାଣୁ ହୋଇଲା ତ ସାର ।
ବିଜ୍ଞାନୀର ଜ୍ଞାନ ବୁଦ୍ଧି ବଦଳେ ନିଇତି
ବାରମାସୀ ପକ୍ଷୀ ରଙ୍ଗ ବଦଳେ ଯେମିତି ।
ଏଥିରେ ଅସୀମ ଜ୍ଞାନ କେବେ ନ ହୁଅଇ
ଯେଣୁ ସିଏ ଏକ ଛାଡ଼ି ଅନ୍ୟକୁ ଧରଇ ।
ଆତ୍ମାଙ୍କର ଜ୍ଞାନ କିନ୍ତୁ ଅଟଇ ପୃଥକ
ଏ ନୁହେଁ କେବଳ ମନ-ବୁଦ୍ଧିର ମୂଳକ ।
ମଣିଷର ସୁପ୍ତ ଉଚ୍ଚ ଚେତନା ସହିତ
ଏହି ଜ୍ଞାନ ଧୀରେ ଧୀରେ ହୁଏ ବିକଶିତ ।

## ବ୍ରହ୍ମଙ୍କୁ କହି ହୁଏ ନାହିଁ :

ବ୍ରହ୍ମ ଉପଲବ୍ଧି କରି ଥାନ୍ତି ଜ୍ଞାନୀ ଜନ,
କିନ୍ତୁ କହି ନ ପାରନ୍ତି ସେ ବ୍ରହ୍ମ କଥନ ।

ଚେତନାର ସିନ୍ଧୁ ସେ ତ, ନାହିଁ ଥଳକୂଳ,
କେ' କେସନ କଳିପାରେ ତାଙ୍କ ଆଦି ମୂଳ ।
କେବଳ ଭକତି-ହିମେ ସ୍ଥାନେ ସ୍ଥାନେ କାହିଁ,
ଯାଇଛି ବରଫ ସ୍ତୂପ ଜଳେ ଭାସିଥାଇ ।
ସେ ସାକାର ରୂପ ଧରି ଭକତ ନିକଟେ
ଏସନେ ପ୍ରକଟ ହୋଇ ଥାଆନ୍ତି ଜଗତେ ।
ଜ୍ଞାନୀ ହୃଦେ ଜ୍ଞାନ-ସୂର୍ଯ୍ୟ ହୁଅନ୍ତେ ଉଦୟ,
ସେ ବରଫ ସ୍ତୂପ ଜଳେ ଭଜଇ ବିଲୟ ।
ବ୍ରହ୍ମ ବ୍ୟକ୍ତ ହୁଅନ୍ତିନି, ସେ ତ ନିରାକାର
ସେ ନିର୍ଗୁଣ ନାହିଁ କିଛି ରୂପ ବା ଆକାର ।
କିନ୍ତୁ ନିରାକାର ସିନ୍ଧୁ ଜଳକୁ ଆଧାରେ,
ରଖାଗଲେ ଜଳ ରୂପ ହୁଏ ଯେ ପ୍ରକାରେ;
ଅନନ୍ତ ହୁଅନ୍ତି ଶାନ୍ତ, ଆନନ୍ଦ କାରଣ
ନିରାକାରେ ନାହିଁ ସୁଖ ଦୁଃଖ କଦାଚନ ।
ଅଳଙ୍କାର ଦେଖି ସିନା ଖୁସି ହୁଏ ମନ
ସୁନା ମୁଣ୍ଡାଟାରୁ ତାହା ମିଳଇ କଅଣ ?

ସାଗରର ଗଭୀରତା ମାପିବାକୁ ଯାଇ,
ଲୁଣର ପିତୁଳା ଯେହ୍ନେ ଆଉ ଫେରେ ନାହିଁ;
ଯେଉଁଠି ନିଜର "ମୁଁ" ଖୋଜି ମିଳେ ନାହିଁ,
ସେଠାରେ ବ୍ରହ୍ମଙ୍କୁ ଅବା କେ' ଖୋଜିବ ଯାଇ ?
ବ୍ରହ୍ମ ଅନୁଭୂତି କେହ୍ନେ କହିବ ବା କିଏ ?
ବିଚାର ହୁଅଇ ଶେଷ, ନ ମିଳନ୍ତି ସିଏ ।
ଯେତେ ବେଶୀ ଉପରକୁ ଉଡୁ ପଛେ ପକ୍ଷୀ
ତଥାପି ଆହୁରି ଉଚ୍ଚ ଆକାଶ ତ ଅଛି ।
ଆକାଶ ଆକାଶ ଖାଲି ଅନନ୍ତ ଆକାଶ
ଚେତନାର ତାହା ଏକ କେବଳ ପ୍ରକାଶ ।

ଯେ ପର୍ଯ୍ୟନ୍ତ ଜଳେ ପୂର୍ଣ୍ଣ ନୋହିଛି ମାଠିଆ
ଭକ୍ ଭକ୍ ଶବ୍ଦ ଶୁଣି ପାରଇ ଦୁନିଆ ।
ପୂର୍ଣ୍ଣ ହେବା ପରିଯନ୍ତ ସେ ଶବ୍ଦ ଶୁଭଇ
ପୂର୍ଣ୍ଣ ହୋଇଗଲେ ଆଉ ଶବ୍ଦ ନ ହୁଅଇ ।

**ମନ୍ତ୍ର ତିନି**

**ଯସ୍ୟାମତଂ ତସ୍ୟ ମତଂ ଯସ୍ୟ ନ ବେଦ ସଃ ।**
**ଅବିଜ୍ଞାତଂ ବିଜାନତାଂ ବିଜ୍ଞାତମବିଜାନତାମ୍ ॥**

"ବ୍ରହ୍ମଙ୍କୁ ମୁଁ ଜାଣି ପାରି ନାହିଁ" - ଯେ କହନ୍ତି,
ପ୍ରକୃତରେ ସେ କେବଳ ବ୍ରହ୍ମଙ୍କୁ ଜାଣନ୍ତି ।
ଆଉ ଯେ କହନ୍ତି, - "ମୁହିଁ ବ୍ରହ୍ମଙ୍କୁ ଜାଣିଛି",
ବ୍ରହ୍ମଙ୍କ ବିଷୟେ ସେହୁ ନ ଜାଣନ୍ତି କିଛି ।
ଜ୍ଞାନୀ ଜନ ପାଶେ ବ୍ରହ୍ମ ଯେହ୍ନେ ଅବିଦିତ,
ଅଜ୍ଞାନୀର ପାଶେ ବ୍ରହ୍ମ ତେସନେ ବିଦିତ ॥

କୌଣସି ଇନ୍ଦ୍ରିୟେ ଜ୍ଞାତ ବ୍ରହ୍ମ ଯେ ନୁହନ୍ତି -
ଏ ଭାବକୁ ଗୁରୁ ଏବେ ଦୃଢ଼ କରୁଛନ୍ତି ।
ସେଥିପାଇଁ ଏହି ମନ୍ତ୍ରେ କହନ୍ତି ଏପରି -
ବ୍ରହ୍ମଙ୍କୁ ଜାଣନ୍ତି ଜ୍ଞାନୀ ଅଜ୍ଞାନୀ ଯେପରି ।

**ଅଜ୍ଞାନୀ ଜାଣନ୍ତି :**

"ବ୍ରହ୍ମଙ୍କୁ ମୁଁ ଜାଣିଅଛି" - କହନ୍ତି ଯେ ଜନ,
ନିଶ୍ଚିତ ଧାରଣା ପୁଣି କରନ୍ତି ପୋଷଣ,
ସେ ପ୍ରକୃତ ଜାଣନ୍ତିନି ବ୍ରହ୍ମଙ୍କୁ କିଞ୍ଚିତ,
ରହନ୍ତି ତାଙ୍କରି ପାଶେ ବ୍ରହ୍ମ ଅବିଦିତ ।

ଏହାର କାରଣ ଅତି ସରଳ ନିଶ୍ଚୟ
ଯେଣୁ ସେ ନୁହନ୍ତି ବୁଦ୍ଧି ଇନ୍ଦ୍ରିୟ ବିଷୟ ।
ସଂସାର ପଦାର୍ଥ କ୍ରିୟା ଦେଖେ ଏ ନୟନ
ନେତ୍ର କିନ୍ତୁ ନ କରଇ ଆତ୍ମ-ଦରଶନ ।
ଆତ୍ମା ତ ନୁହନ୍ତି ବସ୍ତୁ ଅବା କ୍ରିୟା କିଛି ।
ସୀମିତ ପାତ୍ରେ କେ ପାରେ ଅସୀମ ସାଇତି ?
ଦେଶକାଳ ସୀମାୟିତ ବସ୍ତୁକୁ ଯେପରି
ମନ ବୁଦ୍ଧି ଇନ୍ଦ୍ରିୟରେ ଆମେ ପାରୁ କଳି,
ସେପରି ତ ବ୍ରହ୍ମ କେବେ ନୁହନ୍ତି ବିଦିତ
ଅନନ୍ତ ଅଚିନ୍ତ୍ୟ ସେହି ଦେଶ କାଳାତୀତ ।
ସେ ସତ୍ୟ ସ୍ୱରୂପ, ଜ୍ଞାନ ସ୍ୱରୂପ ଅଟନ୍ତି
ବୁଦ୍ଧି ଇନ୍ଦ୍ରିୟରେ ତାଙ୍କୁ କେହି କି କଳନ୍ତି ?
ବାଡ଼ି ଗାଡ଼ି ଚୌକୀ ମେଜ ଜାଣିବା ପରାୟେ,
ବ୍ରହ୍ମ ଜଣା ବୋଲି ଯଦି କେହି କହୁଥାଏ
ତେବେ ଅଜ୍ଞାନର ବଶେ ଥାଆନ୍ତି ସେ କହି
'ସତ୍ୟ' କିନ୍ତୁ ତାଙ୍କୁ କେବେ ବିଦିତ ନୁହଇ ।

**ଜ୍ଞାନୀ ଜାଣନ୍ତିନି :**

ଅପର ପକ୍ଷରେ ମାତ୍ର ଦୃଢ଼ତା ସହିତ
ଜ୍ଞାନୀଏ କହନ୍ତି 'ବ୍ରହ୍ମ ତାଙ୍କୁ ଅବିଦିତ' ।
ଯେଣୁ ପ୍ରକାଶନ୍ତି ବ୍ରହ୍ମ ଇନ୍ଦ୍ରିୟ ଓ ମନ
ଏ ଇନ୍ଦ୍ରିୟ ଯନ୍ତ୍ରେ ତାଙ୍କୁ ଜାଣିବ କେସନ ?
ତେଣୁ ବ୍ରହ୍ମ ଆମ ପକ୍ଷେ ନିଶ୍ଚିତ ଅଜ୍ଞାତ
ଏପରି କହିବା ଜନେ ବ୍ରହ୍ମ ସତେ ଜ୍ଞାତ ।
'ଚୈତନ୍ୟ ସ୍ୱରୂପ' ସେହି ବ୍ରହ୍ମ ନିରାକାର
ଏପରି ପ୍ରକାରେ ସିଏ କରନ୍ତି ବିଚାର ।

ସମର୍ଥନ କରି ଏହି ତତ୍ତ୍ୱ ହୃଦଗତେ
ଏଠାରେ କହନ୍ତି ଗୁରୁ ଶିଷ୍ୟଙ୍କ ଅଗ୍ରତେ -
ଜ୍ଞାନୀଙ୍କ ନିକଟେ ବ୍ରହ୍ମ ଯେସନେ ଅଜ୍ଞାତ,
ଅଜ୍ଞାନୀଙ୍କ ପାଶେ ସିଏ ସେହିପରି ଜ୍ଞାତ ।।
ବ୍ରହ୍ମଙ୍କ ବିଷୟେ ଥାଏ ଯାହାଙ୍କର ଭ୍ରାନ୍ତି,
ବ୍ରହ୍ମଙ୍କୁ ଜାଣନ୍ତି ବୋଲି ସେହି କହିଥାନ୍ତି ।
ମନ ବୁଦ୍ଧି ଇନ୍ଦ୍ରିୟର ସେହି ଅଜ୍ଞ ଜନ
ବସ୍ତୁ ପରି କରିଥାନ୍ତି ଆତ୍ମାଙ୍କ ଦର୍ଶନ ।
ମନ ବୁଦ୍ଧି ଇନ୍ଦ୍ରିୟର ଉପାଧିରେ ଜନ
ପାରନ୍ତି କି କରି କେବେ ଆତ୍ମ-ଦରଶନ ?

ତାଙ୍କୁ ଯେ ଭାବନ୍ତି, ସେହି ଅଚିନ୍ତ୍ୟ ଅଗମ,
ମନ ବୁଦ୍ଧି ଧରିବାକୁ ନ ହୁଅଇ କ୍ଷମ ।
ସେ ଇନ୍ଦ୍ରିୟାତୀତ ଆଉ ଅନିର୍ବଚନୀୟ
ସେ କେବଳ ପାଇଥାନ୍ତି ଏ ତତ୍ତ୍ୱର ଖିଅ ।
ମଣିଷର ବାହ୍ୟ ରୂପ ଇନ୍ଦ୍ରିୟ ବୃତ୍ତିରେ
ତାହାର ସ୍ୱରୂପ ଜଣା ନ ପଡ଼ଇ ତିଳେ ।
ଦେଖିବା ଶୁଣିବା ଆଉ କହିବା ପ୍ରକାରେ
କାହାର ସ୍ୱରୂପ କ'ଣ, ଜଣା ଯାଇ ପାରେ ?

ସେହି ଯେ ଭିତରେ ରହେ ତାହାରି ବଳରେ,
ଦେଖେ ଶୁଣେ କହେ ଜୀବ ଇନ୍ଦ୍ରିୟ-ଯନ୍ତ୍ରରେ ।
ପ୍ରକୃତ ସ୍ୱରୂପ ସେହି ''ଆତ୍ମା'' ବୋଲି ଜଣା
ଘଟେ ଘଟେ ଖେଳେ କରି ପିଣ୍ଡକୁ ଖେଳଣା ।

ଯେ ଜାଣନ୍ତି, ସେ କହନ୍ତି ନମ୍ରତା ସହିତ
ବ୍ରହ୍ମ ତାଙ୍କ ପାଶେ ସଦା ରହେ ଅବିଦିତ ।

କେବଳ ବୋଧରେ ଥରେ ଆସିଗଲେ ଥରେ,
ସାଧାରଣ ଅଜ୍ଞାନୀ ବି ଜାଣଇ ଅନ୍ତରେ ।
ମାତ୍ରକ ଯେ ନ ଜାଣନ୍ତି, କହନ୍ତି ଦମ୍ଭରେ
ବ୍ରହ୍ମ ସୁବିଦିତ ସଦା ତାଙ୍କ ନିକଟରେ ।

## "ମୁଁ" ମଲେ ଆତ୍ମ-ଦର୍ଶନ ହୁଏ :

ସମୁଦ୍ର ମାପେନା ଯେହ୍ନେ ଲୁଣର କଣ୍ଢେଇ
ବ୍ରହ୍ମ କେ ଜାଣେନା ତେହ୍ନେ 'ମୁଁ କାର'କୁ ନେଇ ।
"ମୁଁ" ମଲେ କେବଳ ହୁଏ ଆତ୍ମ-ଦରଶନ,
ଦୃଶ୍ୟ ଦ୍ରଷ୍ଟା ଭେଦ ତହିଁ କେବଳ ସପନ ।
ହୁଅଇ ଯେ କ୍ଷଣେ ଦିବ୍ୟ-ଚେତନା ପ୍ରକାଶ,
ତା' ଆଗରୁ ହୋଇଥାଏ 'ମୁଁ କାର' ବିନାଶ ।
ସତ୍ୟ ଖମ୍ବ ଆଉ ମିଥ୍ୟା ଭୂତ ଏକ ସାଥେ
ଦେଖି ନ ଥିବେ ତ କେହି କେବେ ବାଟେ ଘାଟେ ।
ଏ ପାଳ ଦଉଡ଼ି ବୋଲି ଜାଣିଗଲା ପରେ
ସର୍ପ ଭୀତି ଆଉ ତିଳେ ନ ଥାଏ ମନରେ ।
ସେପରି 'ମୁଁ କାର' ଯହିଁ ଥାଏ ବିଦ୍ୟମାନ
ତହିଁ ନ ରହନ୍ତି କେବେ ହେଲେ ଭଗବାନ ।
'ମୁଁ କାର' ବୀଜକୁ ଜଳେ ମାଟିରେ ବିଲୟ
ଅଙ୍କୁରଇ ତହିଁ ଦିବ୍ୟ-ସତ୍ତା କିଶଳୟ ।
ସମ୍ପୂର୍ଣ୍ଣ ବିଲୋପ ହୋଇ ପାରିଲେ 'ମୁଁକାର'
ଈଶ୍ୱର ମିଳନ୍ତି ଯୋଗେ, ହେଉ ଯେ ପ୍ରକାର ।

ଜ୍ଞାନ-ନେତ୍ରେ ହେଲେ ଥରେ ଦିବ୍ୟ ଅନୁଭୂତି
ଶରୀର-ଚେତନା ଆଉ ରହିବ କେଉଁଠି ?
ଶରୀର-ଚେତନା ଯୋଗୁଁ ଏ ବାହ୍ୟ ଜଗତ
ମନେ ସୃଜେ କାମନାର ଢେଉ ଶତ ଶତ ।

ଶାନ୍ତ ନୁହେଁ ଯେହ୍ନେ ଢେଉ ଭରା ପାରାବାର
ମନ ଶାନ୍ତି ହରେ ତେହ୍ନେ ଭାବନା ଅପାର ।
କିପରି ଏ ଅବସ୍ଥାର ହୁଏ ଅନୁଭୂତି,
ପ୍ରଥମେ ଶୁଣିଲେ କେହି ନ ପାରିବେ ବୁଝି ।
ଗଭୀର ନିଦ୍ରାରେ ଯେବେ ଆମେ ଶୋଇଥାଉ,
ଶରୀର-ଚେତନା ତେବେ ନ ଥାଏ ତ ଆଉ ।
ସେ କାଳେ ସୁଖର ନିଦ କିଏ ଦେଲେ ଭାଙ୍ଗି,
ଟମ ଟମ ହୋଇ କେହ୍ନେ ଆମେ ଯାଉ ରାଗି ।

ଶରୀର-ଚେତନା ବାହ୍ୟ ଜଗତ ସମ୍ବନ୍ଧ
ନଥାଇ ବି ମିଳିଥାଏ ସୁଖ-ମକରନ୍ଦ ।
ସେପରି ଜାଗ୍ରତେ ଏଇ ଶରୀର ଜଗତ,
ଡୋର କାଟି ଆତ୍ମ ଧ୍ୟାନେ ହେଲେ ଉପଗତ,
ଯେଉଁ ଆତ୍ମ-ତତ୍ତ୍ୱ-ରସ ତହିଁରୁ ଝରଇ,
କୌଣସି ପାର୍ଥିବ ସୁଖ ତା ସମ ନୁହଁଇ ।
ବାହ୍ୟ ସ୍ଥୂଳ ବସ୍ତୁ ଖୋଳ ଯେତେ ହେବ ଦୂର,
ସେତେ ଆତ୍ମା ସ୍ୱରୂପରେ ହେବା ଭରପୂର ।

## ସୁପ୍ତ ଶକ୍ତିର ଜାଗରଣ :

ତେବେ ବ୍ରହ୍ମ-ବିଦ୍ୟା ଲାଭେ ଶାସ୍ତ୍ରୀୟ କଥନ
ସାଧକକୁ ଫଳ ଦିଏ ନାହିଁ କଦାଚନ ।
ବହି ପଢ଼ି କେ ବାସ୍ତବ ସୁଖ ପାଏ ନାହିଁ,
କର୍ମ କରିବାକୁ ପଡ଼େ ନିଜକୁ ସେ ପାଇଁ ।
ମହାମନ୍ତ୍ର ପରି 'ଆମ୍ଭେ' ଜପି ଅନୁକ୍ଷଣ
ମୁଣ୍ଡବ୍ୟଥା ଭଲ ହେବ ନାହିଁ କଦାଚନ ।

ଯେତେ ଜପ ବ୍ୟଥା ଭଳ ହେବାର ତ ନୁହେଁ,
ତଣ୍ଡି ବାଟେ କିନ୍ତୁ ଆମ୍ବୋ ଗିଳିବାକୁ ହୁଏ ।
ବୌଦ୍ଧିକ ଚର୍ଚ୍ଚାରେ ତେହ୍ନେ ଆତ୍ମ-ଦରଶନ,
କରିବାକୁ କେହିଁ କେବେ ହୋଇନି ଭାଜନ ।
ପ୍ରତି ହୃଦୟରେ ସ୍ୱତଃ ସ୍ଫୁରଣ ଶକତି,
ଅନାଦି କାଳରୁ ସୁପ୍ତ ହୋଇ ରହିଅଛି ।
ଯୋଗ ଶକ୍ତି ବଳେ ତାହା କରାଇ ଜାଗ୍ରତ
'ସତ୍ୟ' ଜାଣିବାକୁ ହେବେ ସାଧକ ସମର୍ଥ ।

**ମନ୍ତ୍ର ଚାରି**

***ପ୍ରତିବୋଧବିଦିତଂ ମତମମୃତତ୍ୱଂ ହି ବିନ୍ଦତେ ।***
***ଆତ୍ମନା ବିନ୍ଦତେ ବୀର୍ଯଂ ବିଦ୍ୟୟା ବିନ୍ଦତେଽମୃତମ୍ ॥***

ପ୍ରତି ବସ୍ତୁ-ଜ୍ଞାନ ଦେଇ ବ୍ରହ୍ମଙ୍କ ସନ୍ଧାନ
ହୋଇଥାଏ ଯେତେବେଳେ ସେ ପ୍ରକୃତ ଜ୍ଞାନ ।
ଏପରି ସମ୍ୟକ ଜ୍ଞାନ ସମ୍ପନ୍ନ ପୁରୁଷ
ନିଶ୍ଚିତ ଭାବରେ ଲାଭ କରନ୍ତି ପୀୟୂଷ ।
ସେ ଜନ ଲଭନ୍ତି ବଳ ଆତ୍ମ-ଜ୍ଞାନ ଫଳେ,
ବିଦ୍ୟାରେ ଅମୃତ ଲାଭ କରନ୍ତି ସତ୍ୱରେ ॥

ଜ୍ଞାନୀଙ୍କ ନିକଟେ ବ୍ରହ୍ମ ଚିର ଅବିଦିତ-
ପୂର୍ବ ଶ୍ଳୋକେ ଏହି କଥା ହୋଇଛି କଥିତ ।
ଆପାତ ବିରୋଧୀ ସତ୍ୟ ସମାନ ଏ ଭାଷା
ଚକିତ ପାଠକ, ପ୍ରାଣେ ନ ମେଣ୍ଟଇ ଆଶା ।
ଯଦି ବ୍ରହ୍ମ ଅବିଜ୍ଞାତ, ନ ପାଏ କେ ଭେଦ
ତେବେ ଜ୍ଞାନୀ ଅଜ୍ଞାନୀଙ୍କ ମଧ୍ୟେ କି ପ୍ରଭେଦ ?

ସେହି ବ୍ରହ୍ମ ପୁଣି କେହ୍ନେ ହୁଅନ୍ତି ବିଦିତ
ତାର ସମାଧାନ ଏହି ମନ୍ତ୍ରରେ ନିହିତ ।
ମନର ସଂଶୟ ସବୁ ଦୂର ହେବା ପାଇଁ.
ଗୁରୁଜୀ ଏଠାରେ ପୁଣି କହନ୍ତି ବୁଝାଇ ।

## ବ୍ରହ୍ମଙ୍କୁ ଜାଣି ହେବ ?

ବ୍ରହ୍ମ କି ପ୍ରକାରେ ହେବେ ସହଜେ ବିଦିତ,
ସେଇ ପ୍ରଶ୍ନ ଏହିଠାରେ ହୁଏ ଆଲୋଚିତ ।
ଜଗତରେ ଯେତେ ଯେତେ ବସ୍ତୁ ଓ ପଦାର୍ଥ
ଆମ ନେତ୍ରେ ଅନୁକ୍ଷଣ ହୁଏ ପ୍ରତିଭାତ ।
ବସ୍ତୁ ବା କ୍ରିୟାରେ ହୁଏ ଯେ ବୋଧ ପ୍ରତୀତି,
ତାହା ବସ୍ତୁଜ୍ଞାନ - ଏ ତ ସାଧାରଣ ରୀତି ।
ପାର୍ଥିବ ପଦାର୍ଥ ଆଉ ବିଷୟ ବୃତ୍ତିରେ
ହୁଏ ଆମ ବୋଧ ଜ୍ଞାନ ଅଶେଷ ବିଧିରେ ।
ଦେଖି ଜାଣୁ, ଶୁଣି ଜାଣୁ, ଜାଣୁ ଅନୁଭବି
ବସ୍ତୁ ବିଷୟର ଜ୍ଞାନ ହୁଏ ନିରବଧି ।
ନିମିଷେ ନିମିଷେ ଆଉ ପ୍ରତିଟି ମୁହୂର୍ତ୍ତେ
ଅସୁମାରୀ ବୋଧ, ଜ୍ଞାନ ଅନ୍ତରେ ଉକୁଟେ ।
ଜାଗ୍ରତରେ ସ୍ୱପନେ ବା ଶୋଇବା କାଳରେ
ତିନି ଅବସ୍ଥାରେ ଜ୍ଞାନ ହୁଏ ନିରନ୍ତରେ ।
କଥାରେ କାର୍ଯ୍ୟରେ ଅବା ପ୍ରତି ଭାବନାରେ,
କେତେ ଜ୍ଞାନ ହେଉଅଛି ବିଚିତ୍ର ପ୍ରକାରେ ।
ଆମ ଇନ୍ଦ୍ରିୟରେ ଆମ ବୁଦ୍ଧିରେ ମନରେ,
ଏ ଜ୍ଞାନ-ସକଳ ଜାତ ହେଲେ ବି ଅନ୍ତରେ,
ତଥାପି ଇନ୍ଦ୍ରିୟ ବୁଦ୍ଧି ମନ ଜଡ଼ ଯେଣୁ
କିଛି ସେ ପ୍ରକାଶ କରି ନ ପାରନ୍ତି ତେଣୁ ।

ଏ ଇନ୍ଦ୍ରିୟେ ସେ ଜ୍ଞାନର ହେଲେ ବି ବାହକ
କିନ୍ତୁ କେ ନୁହନ୍ତି ଏହି ଜ୍ଞାନ ପ୍ରକାଶକ ।
ସ୍ୱକୀୟ ପ୍ରକାଶ ଶକ୍ତି ନାହିଁ ତ ତାଙ୍କର
ଦେହେ ପ୍ରକାଶିକା ଶକ୍ତି ଏମାନେ କେବଳ ।
ଜଡ଼ ସବୁ ଆମ ବୁଦ୍ଧି ଇନ୍ଦ୍ରିୟେ ଓ ମନ
ପ୍ରକାଶିକା ଶକ୍ତି ସେବା ପାଇବେ କେସନ ?
ନ ପାରିବ ଦେଖି ଆଖି, ଏ କାନ ସେପରି
ଶୁଣି ନ ପାରିବ କିଛି ଯେତେ ଯତ୍ନ କରି ।
ଜଡ଼ର କି କ୍ରିୟା ଥାଏ କେବେ କେଉଁଠାରେ
ଜ୍ଞାନ ପ୍ରକାଶିବେ ସେହି ଅବା କି ପ୍ରକାରେ ?
ଶବର ତ ଆକ୍ଷି କାନ ନାକ ପାଟି ଥାଇ
ନ ପାରେ ପ୍ରକାଶ କରି କିଛି କାହିଁ ପାଇଁ ?
ନିଜର ପ୍ରକାଶ ଶକ୍ତି ନାହିଁ ଯାହାଙ୍କର
ଜ୍ଞାନ ପ୍ରକାଶନେ ସେହୁ ହୁଅନ୍ତି ବିଫଳ
ଜ୍ଞାନ-ପ୍ରକାଶକ ଏକ ଆତ୍ମା ହିଁ କେବଳ
ତାଙ୍କୁ ଛାଡ଼ି ଜଗତରେ ଆଉ ଯେତେ ଜଡ଼ ।
ଆତ୍ମାଙ୍କର ଆଲୋକରେ ହୋଇ ଆଲୋକିତ
ଜଗତ ବିଷୟ ଜ୍ଞାନେ ହୁଏ ଉଦ୍ଭାସିତ ।
ଆତ୍ମାହିଁ କେବଳ ସବୁ ଜ୍ଞାନ ପ୍ରକାଶକ
ସେହି ବୋଧୟିତା ପୁଣି ପରମ ଦ୍ୟୋତକ ।
ଆତ୍ମାଙ୍କ ଆଲୋକେ ସବୁ ହୋଇ ଆଲୋକିତ
ଆମ ଆଗେ ଜ୍ଞାନ ରୂପେ ହୁଏ ପ୍ରକାଶିତ ।
ଜୀବନର ପ୍ରତିବୋଧ ପ୍ରତି ଜ୍ଞାନ ସହ
ଏହି ଆତ୍ମା ବିଦ୍ୟମାନ ଅଛନ୍ତି ନିଶ୍ଚୟ ।
ପାରନ୍ତିନି ଏହା ଅନୁଭବି ଅଜ୍ଞ ଜନେ,
ଦେହକୁ ସେ ଆତ୍ମା ବୋଲି ବିଚାରନ୍ତି ମନେ ।

ଦେହ ଅତିରିକ୍ତ ଏହି ଆତ୍ମାଙ୍କ ଧାରଣା
ମୂଢ଼ ମତି ଅଜ୍ଞେ କାହୁଁ କରିବେ କଳ୍ପନା ?

## ଆତ୍ମାରୁ ବଳ ମିଳେ :

ଆତ୍ମଜ୍ଞାନୀ ଅମୃତତ୍ୱ ଲଭନ୍ତି କିପରି,
ସେହି କଥା ଏହି ମନ୍ତ୍ରେ ଉଠଇ ଗୁଞ୍ଜରି ।
ଆତ୍ମଜ୍ଞାନେ ଜ୍ଞାନୀ ଲାଭ କରିଥାନ୍ତି ବଳ
ଏ ବଳ ଅମୃତ ଲାଭେ ସମର୍ଥ କେବଳ ।
ବିଷୟ ଜ୍ଞାନରୁ ଯେଉଁ ବଳ ଉପୁଜଇ
ସେ ବଳ ଅମୃତ ଲାଭେ ସମର୍ଥ ନୁହଁଇ ।

ଆତ୍ମ-ଜ୍ଞାନ ଦ୍ୱାରା ବୀର୍ଯ୍ୟ ଲଭନ୍ତି ପୁରୁଷ
ବୀର୍ଯ୍ୟ, ଶକ୍ତି ପରାକ୍ରମ ସାମର୍ଥ୍ୟ ପୌରୁଷ ।
ସମ୍ପଦ, ସହାୟ, ମନ୍ତ୍ର, ତପସ୍ୟା, ଔଷଧି
ମଣିଷକୁ ଦିଏ ବଳ ବୀର୍ଯ୍ୟ ନିରବଧି ।
ଅନିତ୍ୟ ବସ୍ତୁରୁ ଯେତେ ବୀର୍ଯ୍ୟ ଉତପରି
ମୃତ୍ୟୁ ଭୟ ହରିବାକୁ ନାହିଁ କା ଶକତି ।
ବିଷୟ ଜ୍ଞାନରୁ ମିଳେ ଯାହା କିଛି ବଳ
ପୁରୁଷକୁ ତାହା ଦେଇ ନ ପାରେ କୈବଲ୍ୟ ।
ଦୁଃଖ ଶୋକ ଉର୍ଦ୍ଧ୍ୱେ ତାହା ନ ପାରେ ଉଠାଇ
ମନୁଁ ଆମ ମୃତ୍ୟୁ ଭୟ ନ ପାରେ ନିଭାଇ ।
ଆତ୍ମ-ଜ୍ଞାନ ଲାଭରୁ ତା କେବଳ ସମ୍ଭବ
ଏ ଜ୍ଞାନରୁ ଜଣେ କରି ପାରେ ଅନୁଭବ -
"ମୁଁ ନୁହେଁ ଇନ୍ଦ୍ରିୟ ମନ ବୁଦ୍ଧିର ଏ ଦେହ
ମୃତ୍ୟୁହୀନ ମୁଁ ଅମର ଆତ୍ମା ନିଃସନ୍ଦେହ ।
ଚୈତନ୍ୟ ସ୍ୱରୂପ ମୁହିଁ ସଦା କାଳେ ସ୍ଥିତ
ଅଜର ଅମର ସତ ମୁଁ ଇନ୍ଦ୍ରିୟାତୀତ ।

ଏ ଜ୍ଞାନରୁ ଯେଉଁ ବଳ ହୁଅଇ ଉପ୍ନ
ଶୋକ ଦୁଃଖ ଊର୍ଦ୍ଧ୍ୱେ ତାହା କରେ ଉତ୍ତୋଳନ ।
ଏହା ଫଳେ ମୃତ୍ୟୁଭୟ ଯାଇ ଥାଏ ଦୂରେ ।
କେବଳ ଆନନ୍ଦାମୃତ ଲୋଟେ ହୃଦପୁରେ ।
ତୁମେ ଅଛ, ଅଛି ତୁମ ଆତ୍ମା ସେହିପରି,
ଆତ୍ମାରେ ଅନନ୍ତ ବଳ ବୀର୍ଯ୍ୟ ଅଛି ଭରି ।
ସବୁ ଶକ୍ତି ଅଛି ଜାଣ ତୁମରି ଆତ୍ମାରେ
ସବୁ କିଛି ତୁମେ କରି ପାର ଏ ସଂସାରେ ।
ତୁମେ ନୁହଁ ଦୀନ ହୀନ ଦୁର୍ବଳ ଯୁବକ
ତୁମେ ବୀର୍ଯ୍ୟଶାଳୀ ଜାତି-ପ୍ରାଣ ସଞ୍ଚାଳକ ।
ଜାଗ ଯୁବଶକ୍ତି ଯେତେ ଅଛ ମୋ ଦେଶର
ତେଜ ବୀର୍ଯ୍ୟେ ଖାଲ ଢ଼ିପ କର ସମତଳ ।
ନିଜକୁ ଦରିଦ୍ର ଦୀନ ଅସହାୟ ଦୁଃଖୀ
ନ ବିଚାରି ଏବେ ଠାରୁ ହୁଅ ଅନ୍ତର୍ମୁଖୀ ।
ଏ ଆତ୍ମା ଅନନ୍ତ ତେଜ ବୀର୍ଯ୍ୟର ଆଧାର
ଅଫୁରନ୍ତ ଅପ୍ରମିତ ଶକ୍ତିର ଭଣ୍ଡାର ।
ଅନ୍ୟର ସାହାଯ୍ୟ ବିନା ତୁମେହିଁ ସମର୍ଥ
ପାରିବ ସାର୍ଥକ କରି ସ୍ୱପ୍ନର ଜଗତ ।
ଆତ୍ମସ୍ଥିତ ଈଶ୍ୱରଙ୍କୁ କରି ଆବିଷ୍କାର,
ଉଠ ଜାଗ, ଠିଆ ହୁଅ, ହୁଅ ଆଗୁସାର ।

## ବିଦ୍ୟାରୁ ଅମୃତ ମିଳେ :

ବିଦ୍ୟାରୁ ଅମୃତ ମିଳି ପାରେ କି ଭାବରେ,
ବର୍ଣ୍ଣିତ ହୋଇଛି ତାହା ଏ ମନ୍ତ୍ର ଶେଷରେ ।
ମଣିଷ ପାରଇ ବୁଝି ଲଭି ଆତ୍ମଜ୍ଞାନ
ଜଗତର ଯେତେ ଜୀବ ପ୍ରାଣୀ ଦୃଶ୍ୟମାନ,

ସେମାନଙ୍କ ଆତ୍ମା କେବେ ନୁହେଁ ଭିନ୍ନ ଭିନ୍ନ
ଏକ ଆତ୍ମା ପ୍ରତି ହୃଦ-କନ୍ଦରେ ଆସୀନ ।
ସେହିଏକ ପରମାତ୍ମା ବହୁତ ରୂପରେ
ନିଜକୁ ପ୍ରକାଶ କରିଛନ୍ତି ଏ ବିଶ୍ୱରେ ।

ଏ ଏକତ୍ୱ ଜ୍ଞାନ ''ବିଦ୍ୟା'' ନାମେ ଅଭିହିତ
ଏ ଜ୍ଞାନେ ଏକାତ୍ମ ଭାବ ହୁଅଇ ସ୍ଫୁରିତ ।
ଯେଉଁ ପରମାତ୍ମା ଆପଣାକୁ ଜଗତରେ
ପ୍ରକାଶ କରାଇଛନ୍ତି ବିଭିନ୍ନ ରୂପରେ,
ସେହି ପରମାତ୍ମା ଆଉ ଆତ୍ମା ଏ ଜୀବର
ସ୍ୱରୂପେ ଅଭିନ୍ନ ଜ୍ଞାନୀ ଜାଣନ୍ତି ମାତର ।
ଆତ୍ମ-ଜ୍ଞାନୀ ଏହି ତତ୍ତ୍ୱ ହୋଇ ଅବଗତ,
ଏକାତ୍ମ ଭାବରେ ଦେଖି ଥାଆନ୍ତି ଜଗତ ।
ଗୀତା 'ଧ୍ୟାନ-ଯୋଗେ' କୃଷ୍ଣ ମହାଯୋଗେଶ୍ୱର
ଏ ଏକତ୍ୱ-ଜ୍ଞାନ-ତତ୍ତ୍ୱ କହନ୍ତି ନିକର ।
''ଆପଣାର ସୁଖ ଦୁଃଖ ପରି ଯେଉଁ ଜନ,
ଅନ୍ୟ ଜୀବ ସୁଖ ଦୁଃଖ କରନ୍ତି ଦର୍ଶନ,
ତାହାଙ୍କୁ ତ ଶ୍ରେଷ୍ଠ ଯୋଗୀ ଜନ ବିଚାରିବ,
ଆମ୍ଭ ମତେ ସେ ପରମ ସାଧକ, ଗାଣ୍ଡୀବ ।''

ଏକ ଆତ୍ମା ସର୍ବଜୀବ ହୃଦେ ବିରାଜିତ,
ଯାହାଙ୍କର ଏହି ଜ୍ଞାନ ହୋଇଛି କିଞ୍ଚିତ,
ସେ ହୁଅନ୍ତି ଅନ୍ୟ ସୁଖ ଦୁଃଖେ ସୁଖୀ ଦୁଃଖୀ
ଏହାହିଁ ତ ବିଶ୍ୱପ୍ରେମ, ଆତ୍ମା-ଅଭିମୁଖୀ ।
ତେଣୁ ଦାନ ଯଜ୍ଞ ଯେତେ ପର ଉପକାର
ଏ ଭାରତବର୍ଷ ବିଶ୍ୱେ କରିଛି ପ୍ରଚାର ।

ଆମ ଦେହ ହାତଗୋଡ ମୁଣ୍ଡ ନାକ କାନ
ଅଙ୍ଗ ବା ପ୍ରତ୍ୟଙ୍ଗ କେହି ନୁହେଁ ବଡ଼ ସାନ ।
କାହିଁ ଯଦି ହୁଏ କ୍ଷତ ଲାଗଇ ତ ପ୍ରାଣେ,
ପ୍ରତି ଅଙ୍ଗେ ଆତ୍ମା ବିହରନ୍ତି; ଆମେ ଜାଣେ ।
ଆମ ଦେହ କେଉଁ ଅଙ୍ଗ ଆନ ଅଙ୍ଗ ପ୍ରତି,
ଯେପରି କରଇ ନାହିଁ କେବେହେଲେ କ୍ଷତି,
ବିଚାର କରନ୍ତି ସେହିପରି ଯୋଗୀଜନେ
ପ୍ରଭୁଙ୍କର ଦେହ ବୋଲି ଏ ବିଶ୍ୱ ଭୁବନେ ।
ଏ ଦେହର ସେ ଅଟନ୍ତି ମାତ୍ର ଏକ ଅଙ୍ଗ
ଲଭନ୍ତି ତେଣୁ ସେ ସଦା ପରମାତ୍ମା ସଙ୍ଗ ।
ସେହି ଅନ୍ୟ ସୁଖେ ସୁଖ ଲଭନ୍ତି ଅପାର
ଅନ୍ୟ ଦୁଃଖେ ଦୁଃଖୀ ହେଉଥାନ୍ତି ବାରବାର ।
ଅଙ୍ଗ ଅଙ୍ଗ ପରସ୍ପର ଯେହ୍ନେ ସହଯୋଗୀ
ବିଶ୍ୱହିତ ପାଇଁ ତେହ୍ନେ ସଦାରତ ଯୋଗୀ ।

ଅନ୍ତରେ ହୋଇଲେ ଏକାତ୍ମତା ଅନୁଭୂତି
ଶୋକ ଦୁଃଖ ମୋହ ଘୃଣା ରହିବ କେଉଁଠି ?
ତେଣୁ ମୃତ୍ୟୁ ମୋହମୟ ଜୀବନ ଊର୍ଦ୍ଧ୍ୱରେ
ଉଠନ୍ତି ସେ ଆତ୍ମ-ଜ୍ଞାନୀ ଜନେ ଏ ମର୍ତ୍ତ୍ୟରେ ।

## ଯଥାର୍ଥ ଜ୍ଞାନ ଓ ସମ୍ୟକ୍ ଦର୍ଶନ:

ଅନ୍ୟ ଦିଗେ ବିଜ୍ଞ ଜନେ ବସ୍ତୁ-ଜ୍ଞାନ ଲଭି
ଆତ୍ମ-ସ୍ଥିତି ତହିଁ କରିଥାନ୍ତି ଉପଲବ୍ଧି ।
ସେ ବୁଝି ଥାଆନ୍ତି ସିନା ନିଜର ଅନ୍ତରେ,
ବସ୍ତୁ ଯେତେ ଭିନ୍ନ ହେଉ ପଛେ ଜଗତରେ,
ଦ୍ରଷ୍ଟା ଆତ୍ମା ଏକ ଏବଂ ଅଖଣ୍ଡ ଅରୂପ,
ସେହି ଅବିନାଶୀ ନିତ୍ୟ, ସେ ଜ୍ଞାନ-ସ୍ୱରୂପ ।

ଏକ ହୋଇ ସଭିଙ୍କି ସେ ଧରି ରଖିଥାନ୍ତି,
ସ୍ୱୟଂପ୍ରକାଶକ ''ବୋଧୟିତା'' ସେ ବୋଲାନ୍ତି ।
ଜାଗତିକ ବସ୍ତୁଜ୍ଞାନ ସହିତେ ଏ ଜନେ
ବ୍ରହ୍ମ ଅନୁଭବ କରିଥାନ୍ତି ପ୍ରତିକ୍ଷଣେ ।
ବ୍ରହ୍ମମୟ ହୁଏ ତେଣୁ ଜୀବନ ତାଙ୍କରି
ବ୍ରହ୍ମଙ୍କୁ ଦେଖନ୍ତି ସେହି ଜନେ ବିଶ୍ୱଭରି ।
ଏହାକୁ କହନ୍ତି ଗୁରୁ ''ସମ୍ୟକ ଦର୍ଶନ'',
ଅମୃତ ଏ ଦରଶନୁଁ ହୁଏ ଉତପନ୍ନ ।
ଏହି ସମଦର୍ଶୀ ଜନେ ତାଙ୍କ ଜୀବନରେ
ଦୁଃଖ ମୋହ-ଜଳଧିରୁ ଉଠନ୍ତି ଊର୍ଦ୍ଧ୍ୱରେ ।
ତହିଁ ସେ ଅମୃତମୟ ନିତ୍ୟାନନ୍ଦମୟ;
ଜୀବନେ ଲଭନ୍ତି ସୁଖ ଶାନ୍ତି ଅତିଶୟ ।
ସବୁ ବୋଧ ପ୍ରତୀତିରେ ଆତ୍ମ-ଉପଲବ୍ଧି
କରିବା 'ଯଥାର୍ଥ-ଜ୍ଞାନ' କହିଛନ୍ତି କବି ।
'ସମ୍ୟକ ଦର୍ଶନ' ପୁଣି ଏହାକୁ ବୁଝାଏ
ପ୍ରତି ବସ୍ତୁ ମଧ୍ୟେ ଯହିଁ ବ୍ରହ୍ମ ଦେଖାଯାଏ ।
ଗୀତା 'ଧ୍ୟାନ ଯୋଗେ' ଏହି କଥା ଯଦୁପତି
ପାର୍ଥେ ''ସମଦର୍ଶୀ'' ତତ୍ତ୍ୱ ବୁଝାଇ କହନ୍ତି-
''ସର୍ବଭୂତେ ସମଦର୍ଶୀ ଯୋଗଯୁକ୍ତ ଜନ
ନିଜର ଆତ୍ମାଙ୍କୁ କରି ଥାଆନ୍ତି ଦର୍ଶନ ।
ସକଳ ଭୂତଙ୍କୁ ପୁଣି ନିଜର ଅନ୍ତରେ
ସେ ଦର୍ଶନ କରିଥାନ୍ତି ଅଭିନ୍ନ ରୂପରେ ।''
ବିଷୟ-ଆସକ୍ତ ଜନ ପ୍ରତ୍ୟେକ ପଦାର୍ଥେ,
ବିଭିନ୍ନତା ଦେଖେ ରୂପ ଗୁଣ ଅନୁପାତେ ।
ମାତ୍ର ଆତ୍ମନିଷ୍ଠ ଯୋଗୀଜନ ସୁମହାନ
ମନରେ ରଖନ୍ତି ନାହିଁ କିଛି ଭେଦ ଜ୍ଞାନ ।

ଉଚ୍ଚ ନୀଚ ଭେଦ ଭାବ ସେ ମନେ ନ ଥାଏ
ସର୍ବ ଭୂତେ ଏକ ବ୍ରହ୍ମ ତାଙ୍କୁ ଦିଶୁଥାଏ ।
ତାଙ୍କୁ ତ ଲାଗଇ ଯେହ୍ନେ ନିଜର ଅନ୍ତରେ
ସର୍ବଭୂତ ରହିଛନ୍ତି ପୂରି ନିରନ୍ତରେ ।

## ଆତ୍ମାଙ୍କର ଜୀବ - ଅଭିନୟ :

ଅରୂପ ଅଦୃଶ୍ୟ ହୋଇ ଶ୍ୱାସ ଚଇତନ୍ୟ,
ଘଟେ ଘଟେ ଗତାଗତ କରେ ଅନୁକ୍ଷଣ ।
ସେହି ତ ଚିନ୍ମୟସତ୍ତା ପଞ୍ଚ -ମହାଭୂତେ
ଚଳାଚଳ କରିଥାଇ ଅତି ଅଦଭୁତେ ।
ଏ ସତ୍ତା ସୂକ୍ଷ୍ମାତିସୂକ୍ଷ୍ମ ନିତ୍ୟ ସର୍ବଗାମୀ
ସେ ଜୀବ ହୃଦୟେ ଆତ୍ମା, ସେ ଅନ୍ତରଯାମୀ ।
ଏ ସତ୍ତା ଶରୀରେ ପଶି ମନ ଇନ୍ଦ୍ରି ସହ
ସ୍ଥୂଳ ବାସନାକୁ ଚିତ୍ତେ କରଇ ସଞ୍ଚୟ ।
ସୂକ୍ଷ୍ମ-ସତ୍ତା ସ୍ମୃତି ଯହୁଁ ହୁଅଇ ବିଲୁପ୍ତ,
ଜୀବ ଦେଖେ ସଂସାରର ମାୟା ମୋହ ରୂପ ।
ସର୍ବବ୍ୟାପୀ ସତ୍ତା ଭୁଲି ସ୍ୱରୂପ ନିଜର
ଜଗତର ସୁଖ ଦୁଃଖେ କରଇ ଆଦର ।
ସୂକ୍ଷ୍ମ ସ୍ୱ ସତ୍ତାରେ ଜୀବ ହେଲେ ନିମଗନ
ଜଗତ ଲାଗିବ ତାକୁ ମିଥ୍ୟା ଓ ସପନ ।
ଅସଂଖ୍ୟ ଦର୍ଶକ ନରନାରୀଙ୍କ ଆଗରେ,
ଅଭିନେତା 'ମେଘନାଦ' ଅଭିନୟ କରେ ।
ରାଜପୁତ୍ର ବେଶଭୂଷା ରାଜକୀୟ ଠାଣି
ଦର୍ପେ କହେ କଥା ହୋଇ ଗର୍ବୀ ଅଭିମାନୀ ।
କିନ୍ତୁ ସେ ଅନ୍ତରେ ଭାବେ ଏ ସତ ନୁହଇ,
'ମେଘନାଦ' ଭୂମିକାରେ ସେ ରୋ'ଲ କରଇ ।

ସାଧକେ ନାଟକ-ରୂପୀ ସଂସାରେ ତେସନେ
ଅଭିନୟ କଥା ମାତ୍ର ରଖିବେ ସ୍ମରଣେ ।
ପ୍ରକୃତ ସେ ଈଶ୍ୱରଙ୍କ ଲୋକ ଅନୁକ୍ଷଣ
ଭିନ୍ନ ଭୂମିକାରେ ମର୍ତ୍ତ୍ୟେ କାଟନ୍ତି ଜୀବନ ।

ଏ ତତ୍ତ୍ୱ ଯେ ଜାଣି କରେ ଅଭ୍ୟାସ ନିରତ
ସୂକ୍ଷ୍ମ ଜଗତରେ ତାର ହୁଏ ଗତାଗତ ।
ସପନରେ ଯାହା ଉଚ୍ଚ ପାହାଡ଼ ବୋଲାଏ
ଜାଗ୍ରତେ ଆକାଶ ଶୂନ୍ୟ ତାହା ହୋଇଯାଏ !
ଜ୍ଞାନେ ଚିର ଜାଗ୍ରତ ଯେ ତାହାର ନିକଟେ
ନିଜ ସ୍ଥୂଳ ଏ ଶରୀର ଆକାଶ ପ୍ରକଟେ ।
ଯୁବକ ନିକଟେ ଯେହ୍ନେ ସ୍ୱପ୍ନର ସୁନ୍ଦରୀ
ମନ ଓ ଇନ୍ଦ୍ରିୟେ ଥାଏ ମାଦକତା ଭରି,
ସାଧକ ନିକଟେ ତେହ୍ନେ ଏ ବାହ୍ୟ ଜଗତ
ଜଣାଯାଏ ସୁଖପ୍ରଦ ମଧୁର ସତତ ।

ତେଣୁ ମୁନି ଋଷି ତପେ କଲେ ଅନୁଭବ
''ମଧୁବାତ ବହେ ମଧୁ କ୍ଷରନ୍ତି ସିନ୍ଧବଃ''
ଅଜ୍ଞାନୀ କହଇ ଭବ ଅଟେ ରୋଗସିନ୍ଧୁ
ଜ୍ଞାନୀ କହେ, କ୍ଷରେ ଏଥି ବ୍ରହ୍ମ - କୃପାବିନ୍ଦୁ ।

## ମନ୍ତ୍ର ପାଞ୍ଚ

**ଇହ ଚେଦବେଦୀଦଥ ସତ୍ୟମସ୍ତି ନ ଚେଦିହାବେଦୀନ୍ମହତୀ ବିନଷ୍ଟିଃ ।**
**ଭୂତେଷୁ ଭୂତେଷୁ ବିଚିତ୍ୟ ଧୀରାଃ ପ୍ରେତ୍ୟାସ୍ମାଲ୍ଲୋକାଦମୃତା ଭବନ୍ତି ॥**

ଏ ଲୋକେ ବ୍ରହ୍ମଙ୍କୁ ଯଦି କିଏସେ ଜାଣନ୍ତି,
ଜୀବନର ସଫଳତା ସେ ଲାଭ କରନ୍ତି ।
ଆଉ ତାଙ୍କୁ ଏ ଲୋକରେ ନ ପାରିଲେ ଜାଣି,
ତେବେ ଜାଣ ନିଶ୍ଚିତରେ ହୁଏ ମହା ହାନି ।
ପ୍ରତିଭୂତେ ଏକ ଆତ୍ମା ଦେଖି ଜ୍ଞାନୀ ନର,
ଏ ସଂସାର ଉର୍ଦ୍ଧ୍ୱେ ଉଠି ହୁଅନ୍ତି ଅମର ।
ଅମୃତ ଆନନ୍ଦମୟ ସ୍ୱାଧୀନ ଜୀବନ-
ପ୍ରତ୍ୟେକ ମଣିଷ ପାଇଁ ହୁଏ ପ୍ରୟୋଜନ ।
ଏ ପରମ ପୁରୁଷାର୍ଥ ଅଟଇ ଜୀବନେ,
ସେ ପାଇଁ ସାଧନା କରିଥାନ୍ତି ଯୋଗୀଜନେ ।
ବ୍ରହ୍ମ ବା ଆତ୍ମାଙ୍କୁ ହୃଦେ କରି ଉପଲବ୍ଧି
ସେ ତରି ପାରନ୍ତି ଏହି ସଂସାର-ଜଳଧି ।

**ଆତ୍ମୋଦ୍ଧାର :**

ପ୍ରତି ପ୍ରାଣୀ ପଦାର୍ଥରେ ବିଶ୍ୱାସ ସହିତ,
ପ୍ରତି-ସ୍ଥାନେ ଯେ ଦେଖନ୍ତି ବ୍ରହ୍ମଙ୍କ ଅସ୍ତିତ୍ୱ,
ପୁଣି ପ୍ରତି ଭୂତେ କରି ଆତ୍ମ-ଦରଶନ
ଇହଲୋକେ ଲଭନ୍ତି ସେ ସତ୍ୟଙ୍କୁ ଯେସନ ।
ଏ ଦର୍ଶନେ ଶୋକ ଦୁଃଖ ଜରା ମୃତ୍ୟୁ ଭୟ
ନଷ୍ଟ ହୁଏ ମୋହ ବ୍ୟାଧି ଅଜ୍ଞାନ ବଳୟ ।

ଅମୃତତ୍ୱ ମିଳେ ପୁଣି ଏ ମରଣ ଲୋକେ,
ମଣିଷର ପୁରୁଷାର୍ଥ ଯାହା ଇହଲୋକେ ।
ଜୀବନ କୃତାର୍ଥ ହୁଏ ମିଳେ ସଫଳତା
ସମଦର୍ଶୀଙ୍କର ଏହି ସାଧନାର କଥା ।

**ମହାବିନାଶ :**

ଅନ୍ୟ ଦିଗେ ଏ ଜନମେ ପୁରୁଷ ଅଧମ,
ଆତ୍ମ-ଉପଲବ୍ଧି କରିବାରେ ନୋହି କ୍ଷମ,
ବିଷମ ଦୁର୍ଗତି ଡାକି ଆଣଇ ଜୀବନେ
ଜନମ-ମରଣ-ଚକ୍ରେ ଘୂରି ଅନୁକ୍ଷଣେ ।
ଶୋକ ଦୁଃଖ ମୋହ ବ୍ୟାଧି ଜରା ଓ ମରଣ
ଏ ଅଧମ ଜନେ ଦିଏ କିଇତି କଷଣ ।
ପ୍ରତ୍ୟେକ ମଣିଷ ତାର ଏଇ ଜନମରେ
ଆତ୍ମ-ଜ୍ଞାନ ଲାଭ କରିପାରେ ସହଜରେ ।
କରିବା ପାଇଁକି ଏହି ଜ୍ଞାନ ଅରଜନ
କେବଳ ତ ଉପଯୋଗୀ ମଣିଷ ଜୀବନ ।
ଯେବେ ଲାଭ ନୋହେ ଆତ୍ମ-ଜ୍ଞାନ ଏ ଜୀବନେ
ପରେ କି ଘଟିବ କିଏ ଜାଣିବ କେସନେ ?
କେ ଜନ୍ମିଲା ଯଦି ପରେ ନୀଚ ଯୋନି ପାଇ
ତେବେ ସେ ଏ ଜ୍ଞାନ କଥା ଭାବିବ କିମ୍ପାଇ ?

କ୍ରମୋନ୍ନତିଶୀଳ ଜୀବ ଜୀବନଟି ଜାଣ,
ଉଚ୍ଚ ଯୋନି ପାଇଁ ନର ଜୀବନ ସୋପାନ ।
କିନ୍ତୁ କିଏ ଯଦି ତାର ଏଇ ଜନମରେ,
ଆତ୍ମ-ଜ୍ଞାନ ଲାଭ ଚେଷ୍ଟା ନ ରଖି ମନରେ,
ଅନାତ୍ମ ବିଷୟେ ରତ ହୋଇ ଅବିରତ,
ଦୈହିକ କ୍ଷଣିକ ସୁଖେ ରହୁଥାଏ ମତ୍ତ,

ତେବେ ତା ଜୀବନ ଧାରା, ହୁଏ ପ୍ରତିହତ
ରୁଦ୍ଧ ହୋଇଯାଏ ସେହି କ୍ରମୋନ୍ନତି ପଥ ।
ଦେହାନ୍ତେ ଉନ୍ନତତର ଜନମ ନ ପାଇ
ଅନ୍ଧକାରମୟ ପୁରେ ପଶଇ ସେ ଯାଇ ।
ଏ ମନ୍ତ୍ରେ ଏହାକୁ 'ମହାବିନାଶ' ବୋଲାଏ,
ଆତ୍ମ-ଘାତୀ ଜନ ଏହି ଗତି ଲଭିଥାଏ ।

## ଅମୃତତ୍ୱ ଲାଭ :

ଏ ମନ୍ତ୍ର ଇଙ୍ଗିତ ଦିଏ, ଆମେ କଲେ ମନ
ଅମୃତତ୍ୱ ଲାଭେ ହୋଇ ପାରିବା ଭାଜନ ।
ଆମ ଏ ଅନ୍ତରେ ଯେଉଁ ଆତ୍ମା ଅବସ୍ଥିତ,
''ବୋଧୟିତା'' ରୂପେ ସିଏ ହୁଅନ୍ତି କଥିତ ।

ସେ ଆତ୍ମାଙ୍କୁ 'ପ୍ରେରୟିତା' ପୁଣି କରୁ ଜ୍ଞାନ
ସେହି ଆତ୍ମା ସର୍ବଜୀବ ହୃଦେ ବିଦ୍ୟମାନ ।
ଏହି ଜ୍ଞାନ ଉପଲବ୍ଧି ହୋଇଲେ ଅନ୍ତରେ
ତେବେ ଅମୃତତ୍ୱ ଲାଭ ହୋଇବ ସତ୍ୱରେ ।

ଅଜ୍ଞାନୀ ଭାବନ୍ତି ସଦା ତାଙ୍କରି ମନରେ
ସର୍ବ ଭୂତେ ଭିନ୍ନ ଭିନ୍ନ ଏଗ ଜଗତରେ ।
ଜ୍ଞାନୀଙ୍କ ମନରେ କିନ୍ତୁ ଅଟଳ ବିଶ୍ୱାସ,
ଏକ ଆତ୍ମା ସର୍ବଭୂତେ ହୁଅନ୍ତି ପ୍ରକାଶ ।
ଏହି ତ 'ଏକତ୍ୱଜ୍ଞାନ'; ଯୋଗୀଙ୍କ ସାଧନା
ତାହା ''ବିଦ୍ୟା'' ବୋଲି ବେଦ କରେ କଳ୍ପନା ।
ଚରାଚର ସର୍ବଭୂତେ ଏକ ଆତ୍ମା-ଜ୍ଞାନ,
''ବୋଧୟିତୃ'' ''ପ୍ରେରୟିତୃ'' ରୂପେ କରି ଧ୍ୟାନ
'ମୁଁ' 'ମୋର' ସଂସାରୁ ଉର୍ଦ୍ଧ୍ୱେ ଉଠନ୍ତି ଜ୍ଞାନୀଏ,
ଶେଷକୁ ଅମୃତ, ବ୍ରହ୍ମ ପାଇଟନ୍ତି ସିଏ ।

## ଗୁରୁ ତତ୍ତ୍ୱ ଓ ଚାରି ଲଡୁ :

ଖାଲି ଶାସ୍ତ୍ର ଜ୍ଞାନେ ସିନା କେ' ହୁଏ ପଣ୍ଡିତ
କିନ୍ତୁ ତାଙ୍କୁ ନ କହନ୍ତି "ଗୁରୁ" କଦାଚିତ ।
ଗୁରୁ ଆତ୍ମଦର୍ଶୀ, ଦ୍ରଷ୍ଟା, ଗୁରୁ ସୁମହାନ,
ନିତ୍ୟ ଉଠେ ସେ ଅନ୍ତରୁ ସ୍ୱତଃସ୍ଫୂର୍ତ୍ତ ଜ୍ଞାନ ।
ସରଳ ବିନୟୀ ଶାନ୍ତ ତେଜ ମନୋହର
ସତେ କି ସେ ମୂର୍ତ୍ତିମନ୍ତ କରୁଣା-ନିର୍ଝର ।

ଗୁରୁ ତତ୍ତ୍ୱ କହିବାକୁ ଯାଇ ଏହି କ୍ଷଣେ,
ଅତୀତର କଥା ଏକ ଆଜି ପଡେ ମନେ ।
ମୋ ଗୁରୁଜୀ ସ୍ୱାମୀ ଚିଦାନନ୍ଦ ସରସ୍ୱତୀ
ଜୀବନ୍ମୁକ୍ତ ହୋଇ ଯିଏ ସଂସାରେ ବୁଲନ୍ତି ।
ସତାଅଶୀ ମସିହାରେ ସେ ଅପ୍ରେଲ ମାସେ
ଭଞ୍ଜନଗରର ରାଜ୍ୟ ଅତିଥି ନିବାସେ,
ଗୁରୁଜୀଙ୍କ ଗହଣରେ କେଇ ଦିନ ପାଇଁ
ରହିବା ସୌଭାଗ୍ୟ ଏହି ଶିଷ୍ୟ ଥିଲା ପାଇ ।
ଏହି ଦଳେ ଥିଲେ ଦୁଇ ଲେବାନନ ବାସୀ
'ମନ୍‌ସୁର' ଓ 'ସାରା' ସ୍ୱାମୀ ସଙ୍ଗ ଅଭିଳାଷୀ ।
ତାହାଙ୍କୁ ଭୁବନେଶ୍ୱର ବିମାନ ବନ୍ଦରେ
ଘେନିଯିବା ପାଇଁ ମୋତେ ଗୁରୁ ଆଜ୍ଞା କଲେ ।

ଗୁରୁଙ୍କୁ ବିଦାୟ ମାଗି ବାହୁଡ଼ିବା କାଳେ
ପାଖରେ ବସାଇ ଗୁରୁ କହିଲେ ଶ୍ରଦ୍ଧାରେ-
"ନିଅ ଏହି ଲଡୁ ଗୋଟି, ଏହା ତୁମ ପାଇଁ"
ନେଲି ମୁହିଁ ତାହା, ମୋର ନମ୍ରତା ଜଣାଇ ।
ତାହା ପରେ କିଛି ଦିବ୍ୟ ବଚନ ଶୁଣାଇ
ଆଉ ଏକ ଲଡୁ ଦେଲେ ହାତକୁ ବଢ଼ାଇ ।

ଗୋଟିଏ ତ ଥିଲେ ଦେଇ, ଆଉ କିଆଁ ଏକ,
ଭାବି ସସଙ୍କୋଚେ ହେଲି ବିସ୍ମିତ ଅନେକ ।
ତାହା ପରେ ଆଉ କିଛି କହିବା ଭିତରେ
ଗୁରୁଜୀ ତୃତୀୟ ଲଡୁ ଦେଲେ ମୋ' ହାତରେ ।
ନାହିଁ କରି କହିଲି "ମୋ ନାହିଁ ପ୍ରୟୋଜନ ।"
ତହୁଁ ସେ କହିଲେ ଏହି ଅମୀୟ ବଚନ ।
"ପ୍ରଥମ ଦ୍ୱିତୀୟ ଆଉ ତୃତୀୟ ମିଠେଇ
ଧର୍ମ ଅର୍ଥ କାମ ପାଇଁ ମୁହିଁ ଥିଲି ଦେଇ ।
ଏବେ ନିଅ ଏ ଚତୁର୍ଥ, ମୋକ୍ଷ ପାଇଁ ଇୟେ,
ଜିସ୍‌କା ବାସ୍ତେ ହମ୍ କୋସିସ୍ କର ରହା ହେଁ ।"
ଶୁଣି ତା' ବିହ୍ୱଳେ ପଡିଗଲି ଗୁରୁ ପଦେ,
ବଚନ ସ୍ଫୁରିଲା ନାହିଁ ହୃଦୟ ଗଦ୍‌ଗଦେ ।

## ଦୁର୍ଲ୍ଲଭ ମଣିଷ ଜନ୍ମ :

ପ୍ରିୟ ବିଦ୍ୟାର୍ଥୀଙ୍କୁ ପୂଜ୍ୟ ଗୁରୁଜୀ ଏଠାରେ
କହନ୍ତି ମୁକ୍ତିର ଭେଦ ଦମ୍ଭ ସହକାରେ ।
କେବଳ ମଣିଷ ଜନ୍ମେ କରିଲେ ଉଦ୍ୟମ
ଆତ୍ମ-ମୁକ୍ତି ଲାଭେ ହେବ ଯେ କେହି ସକ୍ଷମ ।
ମୁକ୍ତି ମଣିଷର ଜନ୍ମଗତ ଅଧିକାର
ଏପରି ସୁଯୋଗ ଆଉ ନାହିଁଟି କାହାର ।
କୃମି କୀଟ ପଶୁ ପକ୍ଷୀ କୋଟି ଯୋନି ଅନ୍ତେ
ଶେଷେ ନର ତନୁ ଆମେ ପାଇଛେ ସମସ୍ତେ ।
କେବଳ ଏ ତନୁ ଲଭି କରିଲେ ସାଧନ
ଜନ୍ମ-ମୃତ୍ୟୁ ଗଣ୍ଠି ହେଲେ ହେବ ବିମୋଚନ ।
ମଣିଷ ଶରୀର ଦେଇ ଆମକୁ ଈଶ୍ୱର
ବୁହାଇଛନ୍ତି କି କୃପା କରୁଣାର ଝର ।

ଦୁର୍ଲ୍ଲଭ ଜନମ ଏଇ, ମଣିଷ ଜନମ
ସ୍ୱର୍ଗେ ଦେବତାଏ କେବେ ନ ହୁଅନ୍ତି ସମ ।

## ଦେବତାଙ୍କ ଭୋଗଯୋନି :

ଦେବତାଙ୍କ 'ଭୋଗ ଯୋନି' ସେ ଭୋଗ କରନ୍ତି,
ପୁଣ୍ୟ ଶେଷେ ପୁଣି ମର୍ତ୍ତ୍ୟେ ଜନମ ହୁଅନ୍ତି ।
ନୂଆ ପୁଣ୍ୟ ଅରଜନେ ନ ଥାଏ ଶକତି,
ଭୋଗ ବିନା ନାହିଁ ଆଉ ଭିନ୍ନ କିଛି ଗତି ।
ଘରକୁ ପଇସାଟିଏ ନାହିଁ ରୋଜଗାର
ଖାଲି ଖର୍ଚ୍ଚ କରି କେହ୍ନେ ଚଳଇ ସଂସାର ?

ଏ ମଣିଷ ଜନମର କାହିଁ ସଫଳତା -
ଚିନ୍ତା କି କରିଚୁ ଆମେ କେବେ ଏହି କଥା ?
କି ଲକ୍ଷ୍ୟ ଆମର ଅବା କର୍ତ୍ତବ୍ୟ କଅଣ ?
କାହିଁ ଯିବା କଥା ? କାହିଁ କରୁଛେ ଗମନ ?
ଖାଇବା ଶୋଇବା ସୁଖେ ବଂଶ ବିସ୍ତାରିବା,
କୋଠା ବାଡି ଗାଡି କରି ଦିନ ବିତାଇବା ।
ଅନୀତି ଓ ଦୁର୍ନୀତିରେ ନେତା ଗିରି କରି
ଆମ ଏ ଆୟୁଷ ଶେଷ କରିବା ଏପରି ?

## ପଶୁପକ୍ଷୀଙ୍କ ପାପଯୋନି :

ଖାଆନ୍ତି ତ ପଶୁପକ୍ଷୀ ଶୁଅନ୍ତି ନିଦକେ
ବିସ୍ତାର କରନ୍ତି ବଂଶ ଆପଣା ପୁଲକେ ।
ତୁଳି ତଳପେ ଯେ ସୁଖ ଏ ମଣିଷ ଲଭେ
ସେ ସୁଖ ଶୁକର ପଙ୍କେ ଲୋଟି ଅନୁଭବେ ।

ମଣିଷ ପରି ତ ସୁଖ ଲଭନ୍ତି ଅନେକ
ପଶୁପକ୍ଷୀ କୃମିକୀଟ ସଂସାରେ ଯେତେକ ।
ତେବେ କି ବୈଶିଷ୍ଟ୍ୟ ଅଛି ମଣିଷ ଜନମେ
ତାହା କି ବିଚାର କିଏ କରଇ ମରମେ ।

ପଶୁଯୋନି ମାତ୍ର ପାପ ଫଳ ଭୋଗ ପାଇଁ
ଏ ଯୋନିରେ ପାପ ପୁଣ୍ୟ ବୋଲି କିଛି ନାହିଁ ।
ପଶୁ ପାଶେ ନାହିଁ ପାପ ଛାଡିବା ଶକତି
ତାଆଠୁ ମିଳିବ କାହୁଁ ହୃଦୟ ଭକତି ?
ଭୋଗିଥାନ୍ତି ପଶୁପକ୍ଷୀ କୃତ ପାପ ଫଳ
ଭୋଗନ୍ତି ସ୍ୱପୁଣ୍ୟ ଫଳ ଦେବତା ସକଳ ।
ତପ ନ କରନ୍ତି ଦେବେ ଅବା ପଶୁପକ୍ଷୀ
ଆତ୍ମ-ଦର୍ଶନେ ସେ ତେଣୁ ସମର୍ଥ ନୁହନ୍ତି ।

ପାପ ପୁଣ୍ୟ ହୁଏ ଯାହା ମଣିଷ ଶରୀରେ
ପୁଣି ପାପ ପୁଣ୍ୟ ଜ୍ଞାନ ଅଛି ଏ ଯୋନିରେ ।
କେବଳ ମଣିଷଠାରେ ହୃଦୟ ଭକତି,
ପ୍ରଭୁ ପଦ ଶ୍ରୀ ପୟରେ ନିରିମଳ ରତି,
ପ୍ରଭୁ କୃପା ରେଣୁ ଲାଭେ ସାଧନ ଭଜନ,
କୀର୍ତ୍ତନ ସମାଧି ଧ୍ୟାନ ଆତ୍ମ-ନିବେଦନ;
ମଣିଷ ଯୋନିରେ ସବୁ ହୁଅଇ ସମ୍ଭବ
ତେଣୁ ତ ସଂସାରେ ଏହି ଜନମ ଦୁର୍ଲ୍ଲଭ ।
ବିବେକ-ବତୀରେ ଦେଖି ପାରଇ ମଣିଷ,
ଭଲ ମନ୍ଦ ପାପ ପୁଣ୍ୟ ଅମୃତ ଓ ବିଷ ।
ତେଣୁ ଇଚ୍ଛା କଲେ ସିଏ ଉଠେ ଉପରକୁ
ସେହି ଇଚ୍ଛା ଫଳେ ପୁଣି ଖସଇ ତଳକୁ ।

କେବଳ ସୌଭାଗ୍ୟଶାଳୀ ମଣିଷ ମରତେ,
ବିଷୟକୁ କରି ଭୋଗ ବିବେକାନୁମତେ,
ହୃଦୟେ ଜଗାଇ ଭକ୍ତି ପ୍ରୀତି ଅକଳନ
ଏ ଦେହେ ପାରଇ ଲଭି ପ୍ରଭୁ ଦରଶନ ।

କୃପା କରି ମଣିଷକୁ ପରମ ଈଶ୍ୱର
ଦେଇଛନ୍ତି ମନ ବୁଦ୍ଧି ଇନ୍ଦ୍ରିୟ ନିକର ।
ତା'ସାଥେ ବିବେକ ଜ୍ଞାନ କରି ଉପଯୋଗ
ଏ ମଣିଷ ଅମୃତତ୍ୱ କରିପାରେ ଭୋଗ ।
ଜ୍ଞାନହୀନ ଭାବେ କିନ୍ତୁ ଏ ଦେହ-ଯନ୍ତ୍ରରେ,
ପାର୍ଥିବ ବିଷୟ ସୁଖ ଭୋଗ ଇଚ୍ଛା କଲେ,
ତେବେ ସେ ଜନମ-ମୃତ୍ୟୁ ଚକ୍ରେ ବାରବାର

ଘୂରି ବୁଲି ଦୁଃଖ ଭୋଗ କରିବ ଅପାର ।
ସଂସାରକୁ ଉପଭୋଗ କରିବା ନିମନ୍ତେ
ମଣିଷ ଶରୀର ଲାଭ ହୋଇନି ମରତେ ।
ମଣିଷ ଶରୀର ଅତି ପ୍ରିୟ ପ୍ରଭୁଙ୍କର
ତେଣୁ ସେ ଗଢ଼ିଲେ ଏହା କରି ମନୋହର ।
କେବଳ ଏକାଗ୍ର ଚିତ୍ତେ ବୁଦ୍ଧିମାନ ଜନ
ଏ ଶରୀରେ କରିପାରେ ପ୍ରଭୁ ଦରଶନ ।
ଜ୍ଞାନ ଭକ୍ତି ପ୍ରାପ୍ତି ପାଇଁ ଶ୍ରେଷ୍ଠ ଏହି ଦେହ
ସକଳ ଫଳର ମୂଳ ଏହା ନିଃସନ୍ଦେହ ।
ସରଗେ ନ ହୁଏ ନୂଆ ପୁଣ୍ୟ ଅରଜନ
ଯେଣୁ ଭକ୍ତି କରିବାକୁ ଦେବେ ଅଭାଜନ ।
ଭକ୍ତି ତ ଭାରତବର୍ଷ ମଣିଷ ଶରୀରେ
ଏହାର ବର୍ଣ୍ଣନା କେତେ ପୁରାଣ ଶ୍ରୁତିରେ ।
ଭକ୍ତି ଭୂମି ଏ ଭାରତ-ଭୂମି ବିଶ୍ୱେ ଖ୍ୟାତ
ଭକ୍ତିରେ ରମଣ କରେ ଭାରତୀୟ ମାତ୍ର ।

ସ୍ୱର୍ଗେ ଦେବତାଙ୍କ କ୍ଷୟ ହୋଇଲେ ଧରମ,
ଇଚ୍ଛନ୍ତି ଭାରତବର୍ଷେ ମଣିଷ ଜନମ ।

ଉତ୍ତମ ନଉକା ରୂପୀ ଏହି କଳେବର
କର୍ଣ୍ଣଧାର ତହିଁ ସିନା ସଦ୍‌ଗୁରୁ ପ୍ରବର ।
ପରମାତ୍ମା-କୃପା ରୂପୀ ସହାୟ-ପବନେ
ଏ ନଉକା ଗତି ପ୍ରାପ୍ତ ହୁଏ ଅନୁକ୍ଷଣେ ।
ଏସନ ମଣିଷ-ଦେହ-ରୂପୀ ନୌକା ପାଇ
ଯଦି କିଏ ଭବସିନ୍ଧୁ ତରି ପାରେ ନାହିଁ,
ତେବେ ସେ ନିଶ୍ଚୟ ଜାଣ ଆତ୍ମଘାତୀ ଜନ
ମୁକ୍ତି ବା ଅମୃତ ଆଶା ତା'ପାଶେ ସପନ ॥

# ତୃତୀୟ ଖଣ୍ଡ

## (ଦେବତାମାନଙ୍କର ବ୍ରହ୍ମଜ୍ଞାନର ଅଭାବ)

**ଉପକ୍ରମଣିକା :**

ପୂର୍ବରୁ ବ୍ରହ୍ମଙ୍କ ବ୍ୟାଖ୍ୟା ହୋଇଛି ଯେପରି,
ମାତ୍ରା ଶିଷ୍ୟମାନେ ତାହା ନ ପାରିଲେ ଧରି,
ନିଶ୍ଚୟ ମନରେ ତାଙ୍କ ଜନ୍ମିପାରେ ଭ୍ରମ
ତେଣୁ ଗୁରୁ କହିଲେ ଏ ଗଳ୍ପ ମନୋରମ ।

'ଜ୍ଞାନୀଙ୍କ ନିକଟେ ବ୍ରହ୍ମ ଯେହ୍ନେ ଅବିଦିତ''
ଏ ଉକ୍ତିରୁ କିଏ କାଳେ ଲଭିବେ ଇଙ୍ଗିତ -
ଯାହା ଅଛି, 'ସତ୍' ତାହା, ପ୍ରମାଣେ ବିଦିତ;
ଯା' ନାହିଁ 'ଅସତ୍' ତାହା, ସଦା ଅବିଦିତ ।

ବ୍ରହ୍ମ ଅବିଦିତ, ଯେଣୁ ନାହିଁ ତାଙ୍କ ସତ୍ତା -
ଶଶ-ଶୃଙ୍ଗ ବନ୍ଧ୍ୟା-ପୁତ୍ର, ନଭ-ପୁଷ୍ପ ଯଥା ।
ମନୁ ଦୂର କରିବାକୁ ଏ ଭ୍ରାନ୍ତ ଧାରଣା
ସତେ କି ଏଠାରେ ଏହି କାହାଣୀ କଳ୍ପନା ।

ଜୀବ ତ ଅକର୍ତ୍ତା, କର୍ତ୍ତା ମାତ୍ର ଏକ ଜଣ
ସେ ଅନାଦି ଅଣାକାର ବ୍ରହ୍ମ ନିରଞ୍ଜନ ।
ଅଜ୍ଞାନ ବଶତଃ ଜୀବ କହଇ,'' ମୁଁ କର୍ତ୍ତା'',
ଗର୍ବ ନାଶ ପାଇଁ ଅବା ଉଲ୍ଲେଖ ଏ କଥା ।
ଯେ ବ୍ରହ୍ମ ସବୁରିଙ୍କର ଶାସନ କରତା
ଈଶ୍ୱରଙ୍କ ଯେ ଈଶ୍ୱର, ଦେବଙ୍କ ଦେବତା,
ଦେବତାଙ୍କ ଜୟ ପାଇଁ ଯେ ବ୍ରହ୍ମ କାରଣ,
ତେଣୁ ତାହାଙ୍କର ସତ୍ତା ନ ଥିବ କେସନ ?

## ଦେବତାଙ୍କ ଗର୍ବ :

କାହାଣୀଟି ଏହିପରି - ଏକଦା ଅମରେ
ବ୍ରହ୍ମଙ୍କ ସକାଶୁଁ ଦୈତ୍ୟେ ଜିଣିଲେ ସମରେ ।
ବିଜୟ ଗର୍ବରେ ତାଙ୍କ ନାଚିଲା ଅନ୍ତର
ଭାବିଲେ ସେ, - ''ଏ ବିଜୟ ନିଶ୍ଚିତ ଆମର ।''
ଦେବତାଙ୍କ ଏହି ଗର୍ବ ଚୂରିବା ନିମନ୍ତେ
ବ୍ରହ୍ମ ଉଭା ହେଲେ ଆସି ଅଦୂରେ ନିକଟେ,
ଧରି ଅଦଭୁତ ଯକ୍ଷ ରୂପ ମନୋହର,
କୋଟି ସୂର୍ଯ୍ୟ ତେଜ କୋଟି ଚନ୍ଦ୍ର ସୁଶୀତଳ,
ବିଦ୍ୟୁତ୍, କୋଟି ସମ ଦ୍ୟୁତି, ବିନା ପାଦ କର;
ଦେଖି ଦେବତାଏ ହେଲେ ବିସ୍ମିତ ବିହ୍ୱଳ ।

କିଏ ସେହି , କେହି ତାହା ଜାଣି ନ ପାରିଲେ,
ତହୁଁ ସର୍ବେ ମିଳି ଆସି ଅଗ୍ନିଙ୍କୁ କହିଲେ, -
''ହେ ଅଗ୍ନି, ହେ ଜାତବେଦ, କର ଅନୁଗ୍ରହ,
କିଏ ସେହି ଯକ୍ଷ ବୁଝି ଆମ ଆଗେ କହ ।''

କଥା ରଖି ଅଗ୍ନି ଦେବ ଗଲେ ତାଙ୍କ ପାଶ
ମନେ ଭରା ଅଭିମାନ ଦମ୍ଭ ଓ ବିଶ୍ୱାସ ।
ଅଗ୍ନିଙ୍କୁ ନିରେଖି ଯକ୍ଷ କଲେ ନିବେଦନ -,
''କହ କିଏ ତମେ, ତୁମ ସାମର୍ଥ୍ୟ କଅଣ ?''

ଉତ୍ତରେ କହିଲେ ଅଗ୍ନି ଦମ୍ଭ ସହକାରେ,
''ମୁଁ ଅଗ୍ନି, ନିମିଷେ ବିଶ୍ୱ ଜାଳି ଦେଇପାରେ ।''
ତହୁଁ ଅଗ୍ନି ଆଗେ ଶୁଷ୍କ କୁଟା ଖଣ୍ଡେ ରଖି
ପଚାରିଲେ ଯକ୍ଷ, ''ଏହା ଜାଳି ପାରିବ କି ?''

ଉଲ୍‌କା, ଗ୍ରହ ପୁଞ୍ଜ, ତେଜ ଆଲୋକ ଦେବତା-
ଅଗ୍ନିଦେବ ଶୁଣି ଯକ୍ଷଙ୍କର ଏହି କଥା,
ଲଗାଇ ସକଳ ଶକ୍ତି ସାମର୍ଥ୍ୟ ତାଙ୍କରି
କୁଟା ଖଣ୍ଡି ତିଳେ ଉଷ୍ମ ନ ପାରିଲେ କରି ।

ତହୁଁ ଫେରି ଅଗ୍ନି ଲଜ୍ଜା ଅବନତ ଶିରେ
ଦେବଙ୍କୁ କହିଲେ, ''ଜାଣି ପାରିଲିନି ତିଳେ ।''
ଦେବତାଏ ତହୁଁ କରି ଦ୍ୱିତୀୟ ପ୍ରୟାସ
ବାୟୁ ଦେବତାଙ୍କୁ ପଠାଇଲେ ଯକ୍ଷ ପାଶ ।
ନିଜର ସାମର୍ଥ୍ୟ ଶକ୍ତି ମନରେ ବିଚାରି
ଅତ୍ୟନ୍ତ ଉଦ୍ଧତ ଗର୍ବୀ ଆତ୍ମ-ଅହଂକାରୀ -
ବାୟୁ, ଯେବେ ଯକ୍ଷ ଆଗେ ହେଲେ ଉପଗତ,
ସେଇ ପ୍ରଶ୍ନ - ''କିଏ ତୁମେ କି ତୁମ ସାମର୍ଥ୍ୟ ?''

ଉତ୍ତରେ କହିଲେ ବାୟୁ '' ତୁମେ କି ଜାଣନି,
ମୁଁ ବାୟୁ, ଭାବିଲେ ପାରେ ଉଡ଼ାଇ ଅବନୀ ।''
ତହୁଁ ଯକ୍ଷ ସେହି କୁଟା ଖଣ୍ଡି ରଖି ତଳେ,
କହିଲେ, ''ଉଡ଼ାଅ ଦେଖି ତୁମର ସେ ବଳେ ।''

ସକଳ ସାମର୍ଥ୍ୟ ଶକ୍ତି ଲଗାଇଲେ ବାୟୁ,
ହେଲେ କୁଟା ଖଣ୍ଡି ତିଳେ ନ ହଲିଲା ଆଉ ।
ଲଜ୍ଜା ଅପମାନ ଗ୍ଲାନି ହୃଦୟରେ ବହି
ବାହୁଡ଼ି କହିଲେ ଦେବେ, ''ମୁଁ ପାରୁନି କହି ।''

ଅଗ୍ନି ଓ ବାୟୁଙ୍କୁ ଦେଖି ବ୍ୟର୍ଥ ମନୋରଥ
ସୁରେ ଚିନ୍ତା କଲେ ତହୁଁ ଅନ୍ୟ ଏକ ପଥ ।
ସଭିଏଁ ଏକାଠି ମିଳି ସୁରେଶଙ୍କ ପାଶେ,
ଯାଇ ଜଣାଇଲେ ଯକ୍ଷେ ଜାଣିବା ସକାଶେ ।

ଇନ୍ଦ୍ର ଦେଖି ଦେବତାଙ୍କ ଅତି ଆକୁଳତା
ଯକ୍ଷ ପାଶେ ଯିବା ପାଇଁ ଦେଲେ ତାଙ୍କୁ କଥା ।
ତା'ପରେ ଯକ୍ଷଙ୍କ ପାଶେ ଚଳିଲେ ଦେବେଶ,
ହୃଦ ଥିଲା ତାଙ୍କ ସ୍ୱଚ୍ଛ ଉଦାର ଅଶେଷ ।

ଦେଖି ଦେବରାଜ ଇନ୍ଦ୍ରଙ୍କର ଆଗମନ,
କରାଇବା ପାଇଁ ତାଙ୍କୁ ବ୍ରହ୍ମ -ସଚେତନ,
ନିଜକୁ ସେ ଯକ୍ଷ ନେଲେ ଅପସାରି ଧୀରେ;
ଦିଗ୍‌ବଳୟେ ସତ୍ତା ତାଙ୍କ ନ ରହିଲା ତିଳେ ।

ଅନଳ ଅନିଳ ବେନି ଦେବଙ୍କ ସମାନ,
ଥିଲାନି ଇନ୍ଦ୍ରଙ୍କ ହୃଦେ ଗର୍ବ ଅଭିମାନ;
ତେଣୁ ମୂର୍ତ୍ତି ଅନ୍ତର୍ଧ୍ୟାନେ ନ ହୋଇ ହତାଶ
ବରଂ ତାଙ୍କୁ ଖୋଜିବାକୁ ବଳାଇଲେ ଆଶ ।

କିଏ ସେହି ଯକ୍ଷ, ତାଙ୍କୁ ଜାଣିବାର ପାଇଁ
ହୃଦ ବ୍ୟାକୁଳତା ଦେଲା ତୀବ୍ରତା ବଢ଼ାଇ ।
ପବିତ୍ର ଇଚ୍ଛାକୁ ମନୁ ନ ପୋଛି ମଘବା
ଆଗେ ଆଗେ ବଢ଼ି ତାଙ୍କୁ ଖୋଜୁଥିଲେ ଅବା ।

ଇନ୍ଦ୍ରଙ୍କର ବ୍ୟାକୁଳତା ଦେଖି ସେ ମୂରତି
ଦେଖା ଦେଲେ ଧରି ରୂପ - ଉମା, ହୈମବତୀ ।
ସତ୍ୟାନ୍ୱେଷୀ ଥିଲେ ଯେଣୁ ସୁରେଶ ମରମେ,
ତେଣୁ ସେ ଲଭିଲେ ବ୍ରହ୍ମ ଦର୍ଶନ ପ୍ରଥମେ ।
ଜାଣିଗଲେ ଯଥାକାଳେ ଇନ୍ଦ୍ର ସୁରପତି,
ବ୍ରହ୍ମ ବିନା ନାହିଁ କାର ସ୍ୱତନ୍ତ୍ର ଶକତି !

ବ୍ରହ୍ମ -ଶକତିରେ ସର୍ବେ ହୋଇ ଶକ୍ତିମାନ
ନିଜ ଶକ୍ତି ଭାବି କରିଥାନ୍ତି ଆସ୍ଫାଳନ ।

**ଏକ ମନ୍ତ୍ର**

**ବ୍ରହ୍ମହଦେବେଭ୍ୟୋ ବିଜିଗ୍ୟେ, ତସ୍ୟହବ୍ରହ୍ମଣୋ ବିଜୟେ ଦେବା ଅମହୀୟନ୍ତ ।**
**ତ ଐକ୍ଷନ୍ତାସ୍ମାକମେବାୟଂ ବିଜୟୋଽସ୍ମାକମେବାୟଂ ମହିମେତି ॥**

ବ୍ରହ୍ମହିଁ ଦେବଙ୍କ ପାଇଁ କରିଲେ ବିଜୟ,
ସେ ବ୍ରହ୍ମଙ୍କ ବିଜୟରେ ଦେବେ ଅତିଶୟ
ହୋଇଲେ ମହିମାନ୍ୱିତ; ଉଚ୍ଛୁଳେ ଅନ୍ତର;
ଭାବିଲେ ସେ, "ଏ ବିଜୟ ନିଶ୍ଚିତ ଆମର ।
ଏଣୁ ଆମ ସଭିଙ୍କର ଗଉରବ ଏହି ।"
(ଏ ବିଜୟେ ଅଂଶୀଦାର ନୁହନ୍ତି ତ କେହି ।)

**ବ୍ରହ୍ମ** ସତ୍ୟ, ସର୍ବବ୍ୟାପି ନିତ୍ୟ ନିରାକାର
ନାହିଁ ତାଙ୍କ ନାମ ଗୁଣ ରୂପ ବା ଆକାର ।
ସବୁ ସ୍ଥାନେ ସବୁକାଳେ ସବୁ ପାତ୍ରେ ପରା
ସମ ଭାବେ ବ୍ରହ୍ମସତ୍ତା ରହିଥାଏ ଭରା ।
ହିନ୍ଦୁ ଦେବତ୍ରୟୀ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ଏ ବ୍ରହ୍ମା ନୁହନ୍ତି ବ୍ରହ୍ମ, ସେ ତ ପରାପର ।
ଏ ବ୍ରହ୍ମ ଅନାଦି ଏକ ସତ୍ୟ ଅବିନାଶୀ
ସ୍ୱସତ୍ତାରେ ଏ ଜଗତ ଥାଆନ୍ତି ପ୍ରକାଶି ।
ଦେବତ୍ୱର ଭିନ୍ନ ଭାବ ବିଭାବ ସହିତ
ଦେବାଦେବୀ ଭିନ୍ନ ନାମେ ହୁଅନ୍ତି ବିଦିତ ।
ଯେପରି ଦେବତା ବ୍ରହ୍ମା ବିଷ୍ଣୁ ମହେଶ୍ୱର,
ବ୍ରହ୍ମା ସୃଷ୍ଟିକର୍ତ୍ତା ବୋଲି ଖ୍ୟାତ ନିରନ୍ତର ।
ବିଷ୍ଣୁ ସେହିପରି ସୃଷ୍ଟି ପାଳନ କରତା,
ସଂହାର କରନ୍ତି ମାତ୍ର ମହେଶ ଦେବତା ।

ଏ ତିନି ଭିତରୁ କେହି ସଂପୂର୍ଣ୍ଣ ନୁହନ୍ତି
ବ୍ରହ୍ମାଣ୍ଡେ କେବଳ ପୂର୍ଣ୍ଣ ବ୍ରହ୍ମ ବିରାଜନ୍ତି ।

## ବ୍ରହ୍ମ ଶକ୍ତିର ଆଧାର :

ଏହି ବ୍ରହ୍ମ ଅସ୍ତିତ୍ୱର ଅନନ୍ତ ସାଗର,
ଢେଉ ବା ଲହରୀ ପ୍ରାୟେ ବିଶ୍ୱ ଚରାଚର ।
କ୍ଷୁଦ୍ର ଅଣୁଠାରୁ ଯେତେ ଦେବତା ଅଛନ୍ତି,
ଅନନ୍ତ ଅସୀମ ବ୍ରହ୍ମୁ ଉତ୍ପନ୍ନ ହୁଅନ୍ତି ।
ଅସରନ୍ତି ଜୀବନର ଉତ୍ସ ଏହି ବ୍ରହ୍ମ
ମୂଳ ଉତ୍ସ ବିନା ନାହିଁ କାହାରି ଜନମ ।
ଯେତେ ବଡ ଶକ୍ତିଶାଳୀ ହେଉ ପଛେ ଢେଉ,
ସିନ୍ଧୁଠୁଁ ସ୍ୱତନ୍ତ୍ର ବୋଲି କହନ୍ତି କି କେହୁ ?

ସେହି ସର୍ବ ଶକ୍ତିବାନ ଶକ୍ତିର ଆଧାର
ତାଙ୍କ ବିନା ନିଜ ଶକ୍ତି ନ ଅଛି କାହାର ।
ତାଙ୍କ ଶକ୍ତି ବିନା ପତ୍ର ନ ହଲଇ କାହିଁ
ଶକ୍ତି ଦାତା ଏକ ବ୍ରହ୍ମ, ଜଗତ ଗୋସାଇଁ ।
କେବଳ ରଚନ୍ତି ସେହି ନିଜ କଉଶଳେ
ଚରାଚର ସକଳଙ୍କୁ ଏ ମହୀମଣ୍ଡଳେ ।

ଏ କଥା ନ ଜାଣି ପାରି ଦେବତା ସରବେ,
ନିଜର ବିଜୟ ବୋଲି କହିଲେ ଗରବେ ।
ନିଜକୁ ମହିମାନ୍ୱିତ କରି ମନେ ମନେ
ବ୍ରହ୍ମଙ୍କୁ ଚିହ୍ନିଲେ ନାହିଁ ଏହି ଦେବଗଣେ ।
କିନ୍ତୁ ବ୍ରହ୍ମ ସର୍ବଜ୍ଞାତା ସର୍ବ ଶକ୍ତିମାନ,
ଦେବତାଙ୍କ ଗର୍ବ ହୃଦେ କଲେ ଅନୁମାନ ।
ଗରବ-ଗଞ୍ଜନ-ବାନା ଉଡୁଛି ତାଙ୍କରି
ବୃଥା ଗର୍ବ ମହାପ୍ରଭୁ ସହନ୍ତେ କିପରି ?

ଗାଳି ସେ ସହଇ କିନ୍ତୁ ନ ସହେ ଗରବ,
ଭକ୍ତ ମନ ଖୋଜେ ସିନା, ନ ଲୋଡେ ଦରବ ।
ମନଚୋର ପ୍ରୀତିଚୋର ଭାବ ବିନୋଦିଆ
ଭାବରେ ଭଜିଲେ ସେତ ଆଗେ ହୁଏ ଠିଆ ।
ତା ପାଖକୁ ଗଲେ ନେଇ ଅହନ୍ତା ବଢେଇ
ଗରବ-ପାହାଡ କ୍ଷଣେ ଦିଏ ସେ ଉଡେଇ ।

## ଶେଠକୁ ପାନ ଖିଲେ :

କୋଟିପତି ଶେଠ ଏକ କାଳିଆ ଦୁଆରେ,
ଉଭା ହୋଇ କହେ ଧନ -ଗରବ ନିଶାରେ ।
''ମହାପ୍ରଭୁ ଆଜ୍ଞା ହେଉ, କରିଛି କାମନା
କୋଟି ମୁଦ୍ରା ବ୍ୟୟେ ଭୋଗ କରିବି ରଚନା ।
କିଛି ମୋ ଶୋଚନା ନାହିଁ ହେ ପ୍ରଭୁ ଅର୍ଥକୁ
ମୋହ ଲାଖି ଭୋଗ କିନ୍ତୁ ଦେବି ମୁଁ ତୁମକୁ ।
ଦୂର ଦୂରାନ୍ତରୁ ଆସି କରୁଛି ପ୍ରାର୍ଥନା
ଆଜ୍ଞା ହେଲେ ପ୍ରଭୁ ମୋର ପୂରିବ ବାସନା ।''

ଉତ୍ତରେ କହିଲେ ପ୍ରଭୁ, ''ହେ ଶେଠ ପ୍ରବର
ଏ ବ୍ୟୟ ବହୁଳ ଭୋଗେ କିଆଁ ମନ କର ?
ଦେବା ପାଇଁ ମୋତେ କିଛି ଘାଣ୍ଟି ହେଲେ ପ୍ରାଣ
ତେବେ କିଆଁ ଦେଉନାହଁ ଖଣ୍ଡେ ଖିଲିପାନ ।''

ତିନି ପାଦ ଭୂମି ଦାନ କଥା ଶୁଣି କାନେ,
ଦାନୀ ବଳି ଯେହ୍ନେ ବ୍ୟଥା ପାଇଥିଲେ ପ୍ରାଣେ,
ତେସନେ ଦାମ୍ଭିକ ଶେଠ ପାନ ଖିଲେ ଶୁଣି
ଲଜ୍ଜା ଅପମାନ ଭରେ ହୋଇଗଲେ ତୁନି ।

ଭାବିଲେ ଏ ଛାର କଥା ମାଗିଲେ ଗୋସାଇଁ
ଏହିକି ଯୋଗାଏ ମୋହ ଭଳି ଶେଠ ପାଇଁ ।
ଯା' କିଛି ଅମୂଲ୍ୟ ଦ୍ରବ୍ୟ ପ୍ରଭୁ ଥିଲେ ମାଗି
କୋଟି ମୁଦ୍ରା ବ୍ୟୟେ ଭୋଗ କରିଥାନ୍ତି ଲାଗି ।
ଗର୍ବୀ ଶେଠ ମନ କଥା ଜାଣି ଜଗନ୍ନାଥ,
ମାଗିଥିଲେ ତାଙ୍କୁ ଖଣ୍ଡେ ଖିଲି ପାନ ମାତ୍ର ।
ପୂଜା-ପଣ୍ଡା ପାନ କଥା କହିଲେ ବୁଝାଇ,
''କାଳିଆ ପାନରେ ଚୂନ ବୋଳା ହୁଏ ନାହିଁ ।
ଗଜ ମୁକୁତାର ଚୂନ ପାନେ ହେବ ବୋଳା,
କେବଳ ସେ ପାନ ଖାଏ ଆମ ଚକାଡୋଳା ।''

'ଗଜ ମୁକୁତାର ଚୂନ' ଶୁଣି ଶେଠପତି
କାହୁଁ ତା ମିଳିବ ଭାବି ଭ୍ରମ ହେଲା ମତି ।
ଲକ୍ଷେ ଗଜ ମଥା ଚିରି ମୁକୁତା ଚିନାଏ
ଭାଗ୍ୟବନ୍ତ କେହି ଜନ ଅବା ପାଇଥାଏ ।
ଗଜ ମୁକ୍ତା ଚୂନ କାହୁଁ ପାଇବ ସେ ଆଜି
ଭାବି ଶେଠ ଧନ ଗର୍ବ କ୍ଷଣେ ଗଲା ଭାଜି ।

ଗାଳି ସେ ସହଇ କିନ୍ତୁ ନ ସହେ ଗରବ,
ଭକ୍ତ ମନ ଖୋଜେ ସିନା, ନ ଲୋଡେ ଦରବ ।

ଏଠାରେ ସେପରି ଦେବଗଣଙ୍କ ଗରବ,
ଅହଂକାର କର୍ଣ୍ଣାପଣ କରିବାକୁ ଖର୍ବ,
ବ୍ରହ୍ମ ନିଜେ ଅଦଭୁତ ଯକ୍ଷ ରୂପ ଧରି
ଦେବତାଙ୍କ ଦୃଷ୍ଟିପଥେ ଗଲେ ଅବତରି ।

**ମନ୍ତ୍ର ଦୁଇ**

***ତଦ୍ଧୈଷାଂ ବିଜଜ୍ଞୌ ତେଭ୍ୟୋ ହ ପ୍ରାଦୁର୍ବଭୂବ ତନ୍ନ ବ୍ୟଜାନତ କିମିଦଂ ଯକ୍ଷମିତି ॥***

ଜାଣି ବ୍ରହ୍ମ ଦେବତାଙ୍କ ବୃଥା ଅଭିମାନ,
ସେମାନଙ୍କ ଆଗେ ଆସି ହେଲେ ବିଦ୍ୟମାନ ।
ଆବିର୍ଭୂତ ରୂପଟିକୁ ଦେଖିଲେ ବି ଦେବେ
କିନ୍ତୁ ଜାଣି ପାରିଲେନି ଏ ଯକ୍ଷ କେ' ହେବେ ॥ ୨ ॥

ବ୍ରହ୍ମ ସର୍ବଜ୍ଞାତା ଯେଣୁ ସେ ପାରିଲେ ଜାଣି
ବୃଥା ଗର୍ବେ ହୋଇଛନ୍ତି ଦେବେ ଅଭିମାନୀ ।
ବ୍ରହ୍ମ ଅନ୍ତର୍ଯ୍ୟାମୀ ବିଭୁ ସର୍ବମୟ କର୍ତ୍ତା
ସେ ଜାଣିଲେ ଦେବତାଙ୍କ ହୃଦୟର କଥା ।

ସର୍ବ ଜୀବ ମନର ସେ ସାକ୍ଷୀ ସଚେତନ
ତାଙ୍କଠାରୁ କିଛି କଥା ନ ରହେ ଗୋପନ ।
ସର୍ବଜ୍ଞାତା ଅନ୍ତର୍ଯ୍ୟାମୀ ରୂପେ ନାରାୟଣ
ଜଗତର ସର୍ବ ଜୀବେ କରନ୍ତି ଶାସନ ।

ଦେବଙ୍କ ଗରବ ଚୂନା କରିବା ନିମନ୍ତେ
ବ୍ରହ୍ମ ଆବିର୍ଭୂତ ହେଲେ ତାହାଙ୍କ ପୁରତେ ।
ସେମାନଙ୍କୁ ଯଥା ଜ୍ଞାନ ଶିଖାଇବା ପାଇଁ,
ପୁଣି ଭାଙ୍ଗିବାକୁ ତାଙ୍କ ମନର ବଡ଼ାଇ,
ବ୍ରହ୍ମ ଉଭା ହେଲେ ସିନା କିନ୍ତୁ ଦେବଗଣେ
ନ ଚିହ୍ନିଲେ କିଏ ଏହି ଦିବ୍ୟମୂର୍ତ୍ତି ଜଣେ ।
ଅଜ୍ଞାନ ଓ ଅହଂକାର-ପଟ୍ଟିକା ତ ମନେ
ଏଥିରେ ବ୍ରହ୍ମଙ୍କୁ ସିଏ ଚିହ୍ନନ୍ତେ କେମନେ ?

**ମନ୍ତ୍ର ତିନିରୁ ଛଅ.**

ତେଽଗ୍ନିମବ୍ରୁବନ୍-ଜାତବେଦ, ଏତଦ୍ବିଜାନୀହି, କିମେତଦ୍ ଯକ୍ଷମିତି ତଥେତି ।।୩।।
ତଦଭ୍ୟଦ୍ରବତ୍ ତମଭ୍ୟବଦତ୍ କୋଽସୀତି ।
ଅଗ୍ନିର୍ବା ଅହମସ୍ମୀତ୍ୟବ୍ରବୀତ୍ ଜାତବେଦା ବା ଅହମସ୍ମୀତି ।। ୪ ।।
ତସ୍ମିଁସ୍ତ୍ୱୟି କିଂ ବୀର୍ଯମିତି । ଅପୀଦଂ ସର୍ବଂ ଦହେୟଂ ଯଦିଦଂ ପୃଥିବ୍ୟାମିତି ।। ୫ ।।
ତସ୍ମୈ ତୃଣଂ ନିଦଧାବେତଦ୍ଦହେତି । ତଦୁପପ୍ରେୟାୟ ସର୍ବଜବେନ,
ତନ୍ନ ଶଶାକ ଦଗ୍ଧୁମ୍ । ସ ତତ ଏବ ନିବବୃତେ -
ନୈତଦଶକଂ ବିଜ୍ଞାତୁଂ ଯଦେତଦ୍ ଯକ୍ଷମିତି ।।୬।।

ଅଗ୍ନିଙ୍କୁ କହିଲେ ସର୍ବେ , "ଆହେ ଜାତବେଦ,
ଏ ଯକ୍ଷ କିଏ ସେ, ତୁମେ ଜାଣିବ ତା ଭେଦ ।
(ପୂଜନୀୟ ମୂର୍ତ୍ତି କାହିଁ ଉଭବ ଏ ସ୍ଥଳେ)
"ତାହା ହେଉ" - ବୋଲି ଅଗ୍ନି କହିଲେ ଉତ୍ତରେ ।। ୩ ।।

**ଆବିର୍ଭୂତ** ଯକ୍ଷ କିଏ ଜାଣିବାର ପାଇଁ,
ଦେବେ ଜଣେ ଜଣେ ଦୂତ ଥିଲେ ପଠିଆଇ ।
ଏଥିରୁ ସୂଚୀତ ହୁଏ ଦେବଙ୍କର ମନେ
ବ୍ରହ୍ମଙ୍କୁ ଜାଣିବା ଇଛା ଥିଲା ସଂଗୋପନେ ।
ଏଥିପାଇଁ ବୋଧହୁଏ ସେମାନେ ହୃଦରେ
ବ୍ରହ୍ମ - ଉପଲବ୍ଧି କରି ପାରିଲେ ଶେଷରେ ।

ଏସନ ପ୍ରକାରେ ଯଦି ମଣିଷ ଅନ୍ତରେ,
ଶ୍ରଦ୍ଧା ଓ ଜିଜ୍ଞାସା ଭାବ ଜାଗି ଉଠେ ଥରେ,
ତେବେ ସେହି ଜନ ଭଗବତ କୃପା ଲଭି,
ଅନ୍ତରେ ବ୍ରହ୍ମଙ୍କୁ କରି ପାରେ ଉପଲବ୍ଧି ।

କିନ୍ତୁ ଯେ ଅଜ୍ଞାନେ ଅନ୍ଧ, ଅଂହକାରେ ମତ୍ତ
ବ୍ରହ୍ମ ଉପଲବ୍ଧି ତାର ହୋଇବ କେମନ୍ତ ?

ଯକ୍ଷଙ୍କ ପାଖରେ ଯେବେ ଅଗ୍ନି ପହଞ୍ଚିଲେ,
"ତୁମେ କିଏ" ବୋଲି ତାଙ୍କୁ ଯକ୍ଷ ପଚାରିଲେ ।
ଉତ୍ତରେ କହିଲେ ଅଗ୍ନି, "ମୁଁ ଅଗ୍ନି ଦେବତା,
ମୁହିଁ ପୁଣି "ଜାତବେଦ", ପ୍ରସିଦ୍ଧ ଏ କଥା ॥ ୪ ॥

'ଜାତବେଦ' ଶବ୍ଦ ଏଠି ଏ ଅର୍ଥ ବୁଝାଏ,
ଯେତେ ଜାତ ପଦାର୍ଥକୁ ଯିଏ ଜାଣିଥାଏ ।
ତେଣୁ ସେ ସର୍ବଜ୍ଞ ବୋଲି ଜ୍ଞାନ ଅଂହକାରେ
ଯକ୍ଷଙ୍କୁ ଉତ୍ତର ଦେଲେ ଏସନ ପ୍ରକାରେ ।
ସକଳ ସୃଷ୍ଟିର ଉର୍ଦ୍ଧ୍ୱେ ବ୍ରହ୍ମଙ୍କର ସ୍ଥିତି,
ତେଣୁ ଅଗ୍ନି ତାଙ୍କୁ ଅବା ଜାଣିବେ କେମିତି ?

ମନ ବୁଦ୍ଧି ଇନ୍ଦ୍ରିୟରେ ଏ ଜୀବ ସେପରି,
ଜାଗତିକ ବସ୍ତୁ ଜ୍ଞାନ ହୃଦୟରେ ଭରି,
ଜ୍ଞାନୀ ଜ୍ଞାତା ବୋଲି କହି ହୁଅଇ ଗର୍ବରେ
ଧରାକୁ ମଣଇ ସରା ବୃଥା ଜ୍ଞାନ ବଳେ ।
କିନ୍ତୁ ଏ ପ୍ରକାର ଜ୍ଞାନ ଯେତେ ହେଲେ ହେଉ
ଏ ଜ୍ଞାନେ ବ୍ରହ୍ମଙ୍କୁ ଜାଣି ନ ପାରଇ କେହୁ ।
କେବଳ ଅନହଙ୍କାର ବିନମ୍ର ହୃଦୟେ,
କେ ଯଦି ଏ ବ୍ରହ୍ମଙ୍କର ଶରଣରେ ରହେ,
ତେବେ ଅବା ଏ ବ୍ରହ୍ମଙ୍କୁ ସେହି ପାରେ ଜାଣି
କିନ୍ତୁ କେ ଜାଣିନି ହୋଇ ଜ୍ଞାନ-ଅଭିମାନୀ ॥

ଯକ୍ଷ ପଚାରିଲେ ତହୁଁ ଶୁଣି ଏ ବଚନ,
"ଏପରି ପ୍ରସିଦ୍ଧ ଗୁଣ ଯୁକ୍ତ ତ ଆପଣ,
ତେବେ କେଉଁ ଶକ୍ତି ଅଛି ଆପଣଙ୍କ ଠାରେ ?"
ଉତ୍ତରେ କହିଲେ ଅଗ୍ନି ଗର୍ବ ସହକାରେ -
"ଏହି ପୃଥିବୀରେ ଯାହା କିଛି ଅଛି ରହି,
ନିମେଷେ ସବୁକୁ ଦଗ୍ଧ କରି ମୁଁ ପାରଇ" ॥ ୫ ॥

ଅଗ୍ନିଙ୍କର ଉତ୍ତରରୁ ହୁଅଇ ସୂଚୀତ
ତାଙ୍କର ତ ଶକ୍ତି ଥିଲା ଅପାର ଅମିତ ।
ତାଙ୍କର ନିଜସ୍ୱ ଶକ୍ତି ତାହା ଭାବି ମନେ
ଯକ୍ଷଙ୍କୁ ସେ କହୁଥିଲେ କଥା ଟାଣ ପଣେ ।
ଏହି ତ ଅଟଇ ତାଙ୍କ ଗର୍ବର କାରଣ,
ଗର୍ବୀ ମନେ ତତ୍ତ୍ୱ ଜ୍ଞାନ ଫୁଟିବ କେସନ ?

"ଏହା ଦଗ୍ଧ କର" - କହି ବ୍ରହ୍ମ ଧୀର ସ୍ୱରେ
ଅଗ୍ନି ଆଗେ ତୃଣ ଏକ ରଖିଲେ ସତ୍ୱରେ ।
ଅଗ୍ନି ତହୁଁ ବେଗେ ଅତି ଉତ୍ସାହ ସହିତ
ସେ ତୃଣ ସମୀପେ ଯାଇ ହେଲେ ଉପସ୍ଥିତ ।
ନ ପାରିଲେ କିନ୍ତୁ ସିଏ ତାକୁ ଦଗ୍ଧ କରି
ତହୁଁ ସେ ଯକ୍ଷଙ୍କ ପାଶୁଁ ଆସିଲେ ଓହରି ।
ଫେରି ଆସି କହିଲେ ସେ ପରେ ଦେବତାଙ୍କୁ
"କିଏ ସେହି ଯକ୍ଷ ଜାଣି ନ ପାରିଲି ତାଙ୍କୁ" ॥ ୬ ॥

କ୍ଷୁଦ୍ର ତୃଣ ଦେଖି ଅଗ୍ନି ଉତ୍ସାହ ସହିତ
ତାହା ଆଗେ ଅତି ବେଗେ ହେଲେ ଉପସ୍ଥିତ ।
ଭାବିଲେ ସେ ତୃଣ ତୁଚ୍ଛ, ମୁହିଁ ଅନାୟାସେ
ଦଗ୍ଧ କରି ପାରେ ତାକୁ ଏହି ଯକ୍ଷ ପାଶେ ।
ଯେବେ ସେ ଲଗାଇ ସବୁ ସାମର୍ଥ୍ୟ ତାଙ୍କର,
ତୃଣ ଦଗ୍ଧ କରିବାରେ ହୋଇଲେ ବିଫଳ,

ତେବେ ତାଙ୍କ ଅଂହକାର ଚୂନା ହୋଇଗଲା
କିଅବା ନିଜସ୍ୱ ଶକ୍ତି ନ ଥିଲାଟି ପରା ।

ଅଗ୍ନିଙ୍କ ସମୀପେ ଯକ୍ଷ କ୍ଷୁଦ୍ର ତୃଣ ରଖି,
ପଚାରିଲେ ଏହା ଦଗ୍ଧ କରି ପାରିବ କି ?
କ୍ଷୁଦ୍ର ତୃଣ ରଖିବାର ଉଦ୍ଦେଶ୍ୟ କଅଣ
ଏହା କରିବାରେ ଅଗ୍ନି ଜାଣିବେ ଯେସନ -
ସାମାନ୍ୟ ତୃଣକୁ ଜାଳି ପାରିଲିନି ଯେବେ,
ବୃଥା ଗର୍ବ ଅଂହକାର ମୋର କିଆଁ ତେବେ ?

**ମନ୍ତ୍ର ସାତ ଠାରୁ ଦଶ**

***ଅଥ ବାୟୁ ମବ୍ରୁବନ୍ - ବାୟବେତଦ୍ ବିଜାନୀହି, କିମେତଦ୍ ଯକ୍ଷମିତି । ତଥେତି ॥୭॥***
***ତଦଭ୍ୟଦ୍ରବତ୍ ତମଭ୍ୟବଦତ୍ - କୋଽସୀତି । ବାୟୁର୍ବା ଅହମସ୍ମୀତ୍ୟବ୍ରବୀତ୍ ମାତରିଶ୍ୱା***
***ବା ଅହମସ୍ମୀତି ॥୮॥***
***ତସ୍ମିଂସ୍ତ୍ୱୟି କିଂ ବୀର୍ଯମିତି । ଅପୀଦଂ ସର୍ବମାଦଦୀୟ ଯଦିଦଂ ପୃଥିବ୍ୟାମିତି ॥୯॥***
***ତସ୍ମୈ ତୃଣଂ ନିଦଧାବେତଦାଦତ୍ସ୍ୱେତି । ତଦୁପପ୍ରେୟାୟ ସର୍ବଜବେନ***
***ତନ୍ନ ଶଶାକାଦାତୁଂ ସ ତତ ଏବ ନିବବୃତେ, ନୈତଦଶକଂ ବିଜ୍ଞାତୁଂ***
***ଯଦେତଦ୍ ଯକ୍ଷମିତି ॥୧୦॥***

ତା' ପରେ କହିଲେ ବାୟୁ-ଦେବତାଙ୍କୁ ଦେବେ,
"ହେ ବାୟୁ ବୁଝିତେ ତୁମେ ଜାଣି ଆସ ଏବେ
ଆଗେ ଉଭା ମହନୀୟ ମୂର୍ତ୍ତି କିଏ ସେହୁ ।"
ଉତ୍ତରେ କହିଲେ ବାୟୁ "ହେ ଦେବେ ତା ହେଉ ॥ ୭ ॥

ଯକ୍ଷଙ୍କ ପାଖକୁ ବାୟୁ କରନ୍ତେ ଗମନ,
"କିଏ ତମେ" ବୋଲି ତାଙ୍କୁ ଯକ୍ଷ କଲେ ପ୍ରଶ୍ନ ।
ଉତ୍ତରେ କହିଲେ ସେହି, "ମୁଁ ପ୍ରସିଦ୍ଧ ବାୟୁ",
ମାତରିଶ୍ୱା ବୋଲି ମତେ ଜାଣି ରଖ ଆଉ ॥ ୮ ॥

ଶୁଣି ଯକ୍ଷ ପଚାରିଲେ ବାୟୁଙ୍କୁ ଏପରି -
"ଏପରି ପ୍ରସିଦ୍ଧ ଗୁଣ-ଯୁକ୍ତ ତ ଆପଣ,
ତେବେ କି ସାମର୍ଥ୍ୟ ଅଛି ଆପଣଙ୍କଠାରେ ?"
ଉତ୍ତରେ କହିଲେ ବାୟୁ ଗର୍ବ ଅହଙ୍କାରେ -
"ଏ ବିଶ୍ୱ ଏ ପୃଥିବୀରେ ଯାହା ଅଛି ରହି,
ନିମିଷେ ସବୁକୁ ମୁହିଁ ଉଡ଼ାଇ ପାରଇ ॥ ୯ ॥

ଯେ ଗମନ କରେ, ଗନ୍ଧ ଗ୍ରହଣ କରଇ
ତେଣୁ ତାକୁ 'ବାୟୁ' ବୋଲି ଜଗତ କହଇ ।
ବାୟୁ ଯେଣୁ ଅନ୍ତରୀକ୍ଷେ କରେ ବିଚରଣ,
'ମାତରିଶ୍ୱା ନାମେ ତେଣୁ ସେ ଖ୍ୟାତ ଭୁବନ ॥

"ଏହାକୁ ଉଡ଼ାଅ " କହି ଯକ୍ଷ ଧୀର ସ୍ୱରେ,
ବାୟୁ ଆଗେ ତୃଣ ଏକ ରଖିଲେ ସତ୍ୱରେ ।
ବାୟୁ ତହୁଁ ଅତି ବେଗେ ଉତ୍ସାହ ସହିତ,
ସେ ତୃଣ ସମୀପେ ଯାଇ ହେଲେ ଉପସ୍ଥିତ ।
ନ ପାରିଲେ କିନ୍ତୁ ସିଏ ତାହାକୁ ଉଡାଇ,
ତହୁଁ ଲଜ୍ଜା ଭରେ ଯକ୍ଷ ପାଖୁଁ ଫେରି ଯାଇ,
ଜଣାଇଲେ ଦେବତାଙ୍କୁ ଦୁଃଖର ସହିତ
"କିଏ ସେହି ଯକ୍ଷ, ଜାଣି ପାରିଲି ନାହିଁତ "॥୧୦ ॥

## ମନ୍ତ୍ର ଏଗାର ଏବଂ ବାର

*ଅଥେନ୍ଦ୍ରମବ୍ରୁବନ୍-ମଘବନ୍ନେତଦ୍ ବିଜାନୀହି, କିମେତଦ୍ ଯକ୍ଷମିତି ତଥେତି ।*
*ତଦଭ୍ୟଦ୍ରବତ୍ । ତସ୍ମାତ୍ତିରୋଦଧେ ॥ ୧୧ ॥*
*ସ ତସ୍ମିନ୍ନେବାକାଶେ ସ୍ତ୍ରିୟମାଜଗାମ ବହୁଶୋଭମାନାମୁମାଂ*
*ହୈମବତୀମ୍ ।*
*ତାଂ ହୋବାଚ-କିମେତଦ୍ ଯକ୍ଷମିତି ॥ ୧୨ ॥*

ଇନ୍ଦ୍ରଙ୍କୁ କହିଲେ ତାହା ପରେ ଦେବଗଣ
"ଭଲ କରି ତାଙ୍କୁ ଜାଣି ଆସ ମଘବନ ।
ଏହି ଦିବ୍ୟ ବପୁଧାରୀ ଯକ୍ଷ କିଏ ସେହୁ ।"
ଉତ୍ତରେ କହିଲେ ଇନ୍ଦ୍ର, "ହେଉ, ତାହାହେଉ ।"
ତହୁଁ ଇନ୍ଦ୍ର ଯକ୍ଷ ଆଗେ ହେଲେ ଉପସ୍ଥିତ,
ଯକ୍ଷ କିନ୍ତୁ ତାଙ୍କ ଆଗୁ ହେଲେ ଅନ୍ତର୍ହିତ ।। ୧୧ ।।

**ଯକ୍ଷ** ଆଗେ ଇନ୍ଦ୍ର ଯେବେ ହେଲେ ଉପସ୍ଥିତ
ସହସା ସେ ସ୍ଥାନୁ ଯକ୍ଷ ହେଲେ ଅନ୍ତର୍ହିତ ।
ହୃଦୟରେ ବୃଥା ଗର୍ବ ଅହଂକାର ଥାଇ
ଯକ୍ଷଙ୍କ ଆଗକୁ ଇନ୍ଦ୍ର ନ ଥିଲେ ତ ଯାଇ ।
ଅବା କରିବାକୁ ନିଜ ଶକ୍ତି ପ୍ରଦର୍ଶନ
ମନରେ ତ ଭାବି କରି ନ ଥିଲେ ଗମନ ।
ପ୍ରକୃତ ଜାଣିବା ଇଚ୍ଛା ଥିଲା ତାଙ୍କ ମନେ
ଜିଜ୍ଞାସୁର ଗର୍ବ ଭାବ ରହନ୍ତା କେସନେ ?

'ତେବେ କାହିଁ ପାଇଁ ଯକ୍ଷ ହେଲେ ତିରୋହିତ,
ପଦେ ହେଲେ କଥା ସିଏ କହିଲେ ନାହିଁତ !
ଫେରି ଦେବତାଙ୍କୁ ଏବେ କହିବି କଅଣ ।।
ମାନହାନି ଠାରୁ ବରଂ ଉତ୍ତମ ମରଣ ।'
ଏପରି ନାନାଦି କଥା ଚିନ୍ତା କରି ମନେ
ମଘବାଙ୍କ ବ୍ୟାକୁଳତା ବଢ଼ିଗଲା କ୍ଷଣେ ।
ତହୁଁ ସେ ଯକ୍ଷଙ୍କୁ କରି ହୃଦୟେ ସ୍ମରଣ
ନିର୍ମଳ ବୁଦ୍ଧିରେ ଗଲେ ତାଙ୍କରି ଶରଣ ।

ଯେ ନିର୍ମଳ ବୁଦ୍ଧି ଯୁକ୍ତ ସାଧକ ମହାନ୍
ଏକାଗ୍ରତା ଫଳେ ଲଭିଥାନ୍ତି ବ୍ରହ୍ମଜ୍ଞାନ ।

ବ୍ରହ୍ମ ବୁଦ୍ଧି ଇନ୍ଦ୍ରିୟରେ ବିଦିତ ନୁହଇ,
ତର୍କେ ବା ବିତର୍କେ କେବେ ଧରା ନ ପଡଇ ।
ଅନ୍ତରେ ନ ଥାଏ ଯେବେ କିଛି କୋଳାହଳ
ତେବେ ତ ହୁଅଇ ଅନ୍ତର୍ଦୃଷ୍ଟି ସୁବିମଳ ।
କେବଳ ଏ ଅନ୍ତର୍ଦୃଷ୍ଟି ଫଳେ ନିରବଧି,
କରନ୍ତି ସାଧକ ଭକ୍ତେ ବ୍ରହ୍ମ ଉପଲବ୍ଧି ॥

ନିରେଖି ଆକାଶେ ଇନ୍ଦ୍ର ସେହି ପୂର୍ବ ସ୍ଥାନେ,
ଚାରୁ ଅଳଙ୍କୃତା ନାରୀ ରତନ ସମାନେ,
ହିମବନ୍ତ କନ୍ୟା ହେମାଙ୍ଗୀନୀ "ଉମା"ତହିଁ,
ପଚାରିଲେ, "କିଏ ଏହି ଯକ୍ଷ ଦିଅ କହି" ॥୧୨॥

## ଉମା ଆବିର୍ଭୂତା :

ପ୍ରଥମେ ଯେଉଁଠି ଯକ୍ଷ ଥିଲେ ଦେଖା ଦେଇ
କ୍ଷଣକେ ସେ ସ୍ଥାନ ଗଲା ଆଲୋକେ ବିଛେଇ ।
ଚୈତ୍ର ଶୁକ୍ଳ ନବମୀର ତିଥି ସେହି ଥିଲା
ମଧ୍ୟାହ୍ନ ସମୟେ ଏହି ଜ୍ୟୋତି ପ୍ରକଟିଲା ।
ତହିଁ ପ୍ରକାଶିତ ତେଜ-ମଣ୍ଡଳ ମଧ୍ୟରେ
ଆବିର୍ଭୂତା ଏକ ନାରୀ ମୂର୍ତ୍ତି ମନୋହରେ ।
କୁମାରୀ କନକ ଚମ୍ପା ନବ ଯଉବନୀ
ବାଳ କୋଟି ରବି ପ୍ରଭା ବିଦ୍ୟୁତ ବରନୀ ।
ରମଣୀୟା କୋମଳାଙ୍ଗୀ କାନ୍ତି କମନୀୟା
ସେ ତନୁ ସୁଷମା ତୂରେ ଶୋଭା ରତିପ୍ରିୟା ।
ନାନା ଦିବ୍ୟ ଅଳଙ୍କାର ଭୂଷଣ ଭୂଷିତା
ଚୂଡାରେ ମଲ୍ଲିକା ମାଳା ବାଳା ସୁଶୋଭିତା ।

ରକ୍ତାମ୍ବରା କ୍ଷୀଣକଟୀ ଚାରୁ ନିତମ୍ବିନୀ
କର୍ଣ୍ଣେ କର୍ଣ୍ଣଫୁଲ କାଞ୍ଚୀ କେୟୂର କିଙ୍କିଣୀ ।
ରକତ ଚନ୍ଦନ ଚିତା ପ୍ରସନ୍ନ-ବଦନା
ସ୍ମିତ ହାସ୍ୟମୟୀ ମୁଗ୍‌ଧା ମୃଗାକ୍ଷୀ-ନୟନା ।
ଘନ ପୀନସ୍ତନା ଈଷତ୍ ରକ୍ତ ଜବାଧରା
ଚତୁର୍ଭୁଜେ ବରାଭୟ ପାଶାଙ୍କୁଶ ପରା ।
ମୁକୁଟେ ଦ୍ୱିତୀୟା ଚାନ୍ଦ ଶୋଭେ ତ୍ରିଲୋଚନୀ
ଭକ୍ତ କଳ୍ପଦ୍ରୁମା ଅବା ଜଗତ ଜନନୀ ।
ତାଙ୍କ ଚାରି ପାଶେ ଚାରି ବେଦ ମୂର୍ତ୍ତି ଧରି
ରାଶି ରାଶି ଯଶ ଗାନ କରନ୍ତି ତାଙ୍କରି ।
ହୈମବତୀ ଶିବା ''ଉମା''ଉଭା ହେଲେ ଆସି
ଅତୁଳିତ ତେଜ ପୁଞ୍ଜ ପ୍ରଭା ପରକାଶି ।
ସ୍ୱତଃ କୃପାମୟୀ ସର୍ବ କାରଣ କାରଣ
ଦୟା କରି ଦେବରାଜେ ଦେଲେ ଦରଶନ ।

## ଉମାଙ୍କ ବ୍ରହ୍ମଜ୍ଞାନ :

ଅନେକ ପ୍ରକାର ମନ୍ତ୍ରେ ସ୍ତୋତ୍ରେ ସ୍ତୁତି କରି
ଦେବେଶ କହିଲେ ଦେବୀ ଉମାଙ୍କୁ ଏପରି -
''ହେ ଦେବୀ ସେ ଯକ୍ଷ କିଏ, କିମ୍ବାଇ ପ୍ରକଟ
ଦୟାକରି ଦିଅ କହି ନ କରି କପଟ ।।''

ଉତ୍ତରେ କହିଲେ, ଦେବୀ, ''ଶୁଣ ମଘବନ,
ସେ ବ୍ରହ୍ମ, ମୋ ରୂପ, ସର୍ବ କାରଣ କାରଣ ।
ଏ ବିଶ୍ୱ ନିୟନ୍ତା ମାୟା-ଶକ୍ତି ମୁହିଁ ସେହି
ସର୍ବେ ମୟାଚ୍ଛନ୍ନ ମୋତେ ନ ଜାଣନ୍ତି କେହି ।
ଚାନ୍ଦ ଓ ଚାନ୍ଦିନୀ ମଧ୍ୟେ ଯେହ୍ନେ ଅଭିନ୍ନତା,
ମୁହିଁ ଜାଣ ମୋ ମାୟାର ତେସନେ ଏକତା ।

ଜଗତେ କେବଳ ଯେତେ ଅନ୍ତର୍ମୁଖୀ ଜନେ
ମାୟା ମହାମାୟାକୁ ସେ ଜାଣନ୍ତି ଏସନେ ।
କିନ୍ତୁ ସଦା ବହିର୍ମୁଖୀ ଜନେ ଏ ସଂସାରେ
ମାୟାକୁ ଜାଣନ୍ତି ତମ ଅବିଦ୍ୟା ଆକାରେ ।
ବହିର୍ମୁଖୀ ମାୟାରୁ ଏ ଜଗତ କଳ୍ପିତ
ଅଜ୍ଞାନୀଏ ଏ ଜଗତେ ହୁଅନ୍ତି ମୋହିତ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତ୍ରିଗୁଣ ପ୍ରତୀକ
ବ୍ରହ୍ମା ରଜୋ ଗୁଣ, ବିଷ୍ଣୁ ସତ୍ତ୍ୱରେ ଅଧିକ ।
ତମୋ ଗୁଣ ଆଧିକ୍ୟରୁ ଦେବ ମହେଶ୍ୱର
ରୁଦ୍ର ନାମେ ଜଗତରେ ଖ୍ୟାତ ନିରନ୍ତର ।
ବ୍ରହ୍ମା ସ୍ଥୂଳ-ଦେହୀ, ସୂକ୍ଷ୍ମ ବିଷ୍ଣୁ - ନାରାୟଣ
ଅଟନ୍ତି କାରଣ-ଦେହୀ ଶମ୍ଭୁ - ତ୍ରିଲୋଚନ ।
ଏ ତିନିଙ୍କ ପରେ ଜାଣ ମୁଁ ଚତୁର୍ଥ-ନାମୀ
ତୁରୀୟ ଅବସ୍ଥା, ମୁହିଁ ସର୍ବ ଅନ୍ତର୍ଯ୍ୟାମୀ ।
ଏହାଙ୍କ ଉପରେ ଯେଉଁ ପରଂବ୍ରହ୍ମ ରୂପ
ସେହି 'ନିରାକାର', ତାହା ମୋହରି ସ୍ୱରୂପ ।
ନିର୍ଗୁଣ ସଗୁଣ ଭେଦେ ଦୁଇ ରୂପ ବହି
ଜଗତ ସରଜି ସୃଷ୍ଟି ମଧ୍ୟେ ପ୍ରବିଶଇ ।
ମୋ ଆଜ୍ଞାରେ ବ୍ରହ୍ମା ବିଷ୍ଣୁ ରୁଦ୍ର-ପଶୁପତି
ଜଗତ ସରଜି ପାଳି ସଂହାର କରନ୍ତି ।
ମୋହରି ପ୍ରେରଣା ପାଇ ବହଇ ପବନ
ନଭ ପଥେ ସୂର୍ଯ୍ୟ ଦେବ କରନ୍ତି ଗମନ ।
ମୋ ଭୟେ ଅନଳ ଦେବ୍ ଯମ ସୁରପତି
ନିଜର କର୍ତ୍ତବ୍ୟ ସବୁ ସମ୍ପନ୍ନ କରନ୍ତି ।
ମୋ କୃପାରୁ ତୁମେ ମାତ୍ର ଜିଣିଲ ସମରେ
କାଷ୍ଠ ପୁତ୍ତଳିକା ସର୍ବେ ମୋହରି ହସ୍ତରେ ।

•

ସଭିଙ୍କୁ ନଚାଏ  ମୁହିଁ ମୋର ଇଚ୍ଛାମତେ
କା'ର କିଛି ଶକ୍ତି ନାହିଁ ଜାଣ ଏ ଜଗତେ ।

ଗର୍ବ ଅଭିମାନେ ତୁମେ ମୋତେ ଗଲ ଭୁଲି,
ନିଜ ବୁଦ୍ଧି ଅହଂକାରେ ଉଠିଥିଲ ଫୁଲି ।
ମାୟା ଆବରଣେ ଯେଣୁ ହେଲ ବିମୋହିତ
ତେଣୁ କୃପା କରି ଆଗେ ହେଲି ଉପସ୍ଥିତ ।
ମୁଁ ସଚ୍ଚିଦାନନ୍ଦ-ରୂପା ଦେବୀ ଭାବି ମନେ
ଗର୍ବ ଅଭିମାନ ତେଜି ଆସ ମୋ ଶରଣେ ।''

**ଭକ୍ତ-ବାଇ-ଭଗବାନ :**

ନିରାକାର ନିର୍ବିକାର ନିର୍ଗୁଣ ପରମ,
ସର୍ବଜ୍ଞାତା ସର୍ବ ଶକ୍ତି - ଦାତା ପରଂବ୍ରହ୍ମ,
ସେ କିପରି ନିଜ ଜ୍ଞାନ ଦେବାକୁ ଭକତେ
ନାମ ରୂପ ଧରି ଉଭା ହୁଅନ୍ତି ମରତେ ।
ହିମବନ୍ତ କନ୍ୟା 'ଉମା' ହେମା, ହୈମବତୀ
ନିରାକାର ବ୍ରହ୍ମଙ୍କ  ସେ ଦୈହିକ ମୂରତି ।
ସେହି କଥା ଆମେ ଦେଖି ପାରୁଛେ ଏ ସ୍ଥଳେ
ବ୍ରହ୍ମ ନିଜେ ହେଲେ ଉଭା ଉମାଙ୍କ ରୂପରେ ।
ଭକ୍ତ ପାଇଁ ଭଗବାନ ମୂର୍ତ୍ତି ଏ ଜଗତେ
ଭକ୍ତ ତାଙ୍କ ପ୍ରାଣଧନ ଗଣ୍ଠିଧନ ସତେ ।।
କର୍ମ ହେଉ ଭକ୍ତି ହେଉ ଅବା ଜ୍ଞାନ ପଥ,
ପ୍ରଭୁଙ୍କ ପାଇଁ ଯେ ପଥ ବାଛଇ ଭକତ,
ସେହି ପଥେ ଦରଶନ ଦିଅନ୍ତି ଗୋସାଇଁ
ଭକତ ଭେଟିବା ପାଇଁ ଆସନ୍ତି ସେ ଧାଇଁ ।

ଏମିତି ପାଗଳ ପରି କହ କେ ହୋଇବ
ଭକ୍ତ ପାଇଁ ବାହୁଙ୍ଗୀରେ କେ ଭାର ବୋହିବ ?
ଦାମାଜୀଙ୍କ ପାଇଁ କିଏ ମାହାର ସାଜିବ,
ଜନାବାଇ ପାଇଁ ଅବା ଅଟା କେ ପେଷିବ ?
ସଜନା କଂସେଇ ମାଂସ ବିକୁଥିଲା ବସି
କେ ତାକୁ ସାହାଯ୍ୟ କରୁଥିଲା ହସି ହସି ?

ସାକ୍ଷୀ ଦେବା ପାଇଁ ଭକ୍ତ ପଛେ କେ' ଧାଇଁବ,
କିଏ ପୁଣି ମୀରା ପ୍ରାଣଧନ ବୋଲାଇବ ?
ସାହା ହୁଏ କିଏ ସିପୁଟିକୁ ବନ୍ଦୀ ଘରେ
ଦେଖାଦିଏ କେ 'ମଙ୍ଗଳ' 'ଆନନ୍ଦ' ଶବରେ ?

ଭକ୍ତ ଆଉ ଭଗବାନ ଅଭିନ୍ନ ହୃଦୟ,
ଯୁଗେ ଯୁଗେ ତାଙ୍କ ଯୋଗ ନ ଲଭେ ବିଳୟ ।
ସାକାର ହୁଅନ୍ତି ନିରାକାର ଭକ୍ତ ପାଇଁ
''ଉମା''ରୂପେ ଯେହ୍ନେ ଇନ୍ଦ୍ରେ ଭେଟିଲେ ଗୋସାଇଁ ।।

# ଚତୁର୍ଥ ଖଣ୍ଡ

## (ବ୍ରହ୍ମଜ୍ଞାନ ଓ ତାର ଫଳ)

**ଉପକ୍ରମଣିକା :**

ବ୍ରହ୍ମଜ୍ଞାନ ବ୍ରହ୍ମ - ବିଦ୍ୟା ବ୍ରହ୍ମେ ତଲ୍ଲୀନତା
ସୂକ୍ଷ୍ମ ଗୂଢ଼ ଜ୍ଞାନର ଏ ଚରମ ଅବସ୍ଥା ।
ଏହି ଅବସ୍ଥାକୁ ଯଦି ଯାଏ କେହି ଥରେ
ହଜାଇ ନିଜର ସତ୍ତା ମିଳାଏ ଶେଷରେ ।
ବେଦାନ୍ତର ଜ୍ଞାନେ ଅବା ଗୁରୁ ଉପଦେଶେ
କିଏ କାହିଁ ପହଞ୍ଚନି ସେ ଦୁର୍ଜ୍ଞେୟ ଦେଶେ ?
କଠୋର ସାଧନା ତପ ଆତ୍ମ-ନିମଜ୍ଜନେ
ସଫଳତା ଲଭେ ଅବା କୋଟିକରେ ଜଣେ ।
କେବଳ ଦେଖାଇ ଦେବା ପାଇଁ ସେହି ପଥ
ମୁନି ଋଷିମାନଙ୍କର ଏ ଉପନିଷଦ ।
ଏମିତିକା ତତ୍ତ୍ୱ ଭରା ଗ୍ରନ୍ଥେ କାହିଁପାଇଁ
ପିଲାଳିଆ ଗପଟିଏ ରଖିଲେ ଖଞ୍ଜାଇ ।
ଏ ଗପର କି ଗୁରୁତ୍ୱ ରହିଅଛି ଅବା,
ଜାଣିଗଲେ ହୃଦୟରେ ଜାଗିପାରେ ଶ୍ରଦ୍ଧା ।
ତେବେ ସାଧନାର ପଥ ସହଜ ହୋଇବ,
ମନରୁ ସଂଶୟ ଦ୍ୱନ୍ଦ୍ୱ ବିଲୟ ଭଜିବ ।
ଆତ୍ମାଙ୍କ ସ୍ୱରୂପ ଜ୍ଞାନ ପ୍ରକାଶ ନିମନ୍ତେ,
ଆତ୍ମିକ ଚର୍ଚ୍ଚା ଯେ ହେଲା ଶିଷ୍ୟଙ୍କ ପୁରତେ,
ତାର ବସ୍ତୁଗତ ଚିତ୍ର ଆଙ୍କିବା ଆଶାରେ
ମନୋଜ୍ଞ କାହାଣୀ ଖଞ୍ଜା ଯାଇଚି ଏଠାରେ ।

## ପିଣ୍ଡ-ବ୍ରହ୍ମାଣ୍ଡ :

ସୃଷ୍ଟି ତତ୍ତ୍ୱ କଥା ଆମେ କଲେ ଆଲୋଚନା
ଜାଣୁ ଅବ୍ୟକ୍ତରୁ ବ୍ୟକ୍ତ ଜଗତ କଳ୍ପନା ।
ସୂକ୍ଷ୍ମରୁ ହୁଅଇ ଯେହ୍ନେ ସ୍ଥୂଳର ବିକାଶ
ସେହି କ୍ରମ ଅନୁସାରେ ଏ ସୃଷ୍ଟି ପ୍ରକାଶ ।
ସ୍ଥୂଳରୁ ଅଧିକ ସ୍ଥୂଳ କ୍ରମ ଯେଉଁମିତି,
ସେ କ୍ରମେ ଆକାଶ, ବାୟୁ, ଅଗ୍ନି, ଜଳ, କ୍ଷିତି ।
ଏହିଁ ପଞ୍ଚ ମହାଭୂତେ କ୍ରମ ପରିଣାମ
ଏ ପୃଥିବୀ ସବୁ ଠାରୁ ସ୍ଥୂଳର ପ୍ରମାଣ ।
ପଞ୍ଚଭୂତେ ପଞ୍ଚଗୁଣ - ଶବ୍ଦ ଆକାଶର,
ବାୟୁ ଗୁଣ ସ୍ପର୍ଶ, ରୂପ ଗୁଣ ଅନଳର ।
ଜଳ ଗୁଣ ରସ, ପୃଥିବୀର ଗୁଣ ଗନ୍ଧ
ମୂଳ ଉପାଦାନ ସହ ଗୁଣର ସମ୍ବନ୍ଧ ।

ନାସା ପଥେ ଜୀବ ଗନ୍ଧ ଆଘ୍ରାଣ କରଇ
ମାଟି ଅଧିଷ୍ଠାନ ତେଣୁ ଦେହେ ଅଛି ରହି ।
ଜିହ୍ୱାରେ ଏ ଜୀବ ରସ କରେ ଆସ୍ୱାଦନ
ଜଳ ଅଧିଷ୍ଠାନ ତେଣୁ ଦେହେ ସମ୍ପାଦନ ।
ଅଗ୍ନି ଗୁଣ ରୂପ ଯେଣୁ ନୟନ ଆଲୋକେ
ନିରେଖେ ଜଗତ ରୂପ ଏ ଜୀବ ଭୂଲୋକେ ।
ସ୍ପର୍ଶ ଅନୁଭୂତ ହୁଏ ଏ ଦେହରେ ଯେଣୁ
ପବନର ଅବସ୍ଥିତି ଥାଏ ଦେହେ ତେଣୁ ।
କାନେ ଶବ୍ଦ ଶୁଣୁ, ଶବ୍ଦ ଗୁଣ ଆକାଶର
ଆକାଶ ଏ ଦେହେ ତେଣୁ ଅଛି ନିରନ୍ତର ।
ପଞ୍ଚଭୂତେ ଯେହ୍ନେ ବିଶ୍ୱ ବ୍ରହ୍ମାଣ୍ଡ ଗଠିତ
ତେହ୍ନେ ପିଣ୍ଡେ ଏ ବ୍ରହ୍ମାଣ୍ଡ ଥାଏ ଅବସ୍ଥିତ ।

ଏହି ପଞ୍ଚ ଜ୍ଞାନେନ୍ଦ୍ରିୟେ, ଶାସ୍ତ୍ରେ ବଖାଣନ୍ତି
ପଞ୍ଚଭୂତେ ଅଧିପତି ଦେବତା ଅଟନ୍ତି ।
ପ୍ରତି ଜ୍ଞାନେନ୍ଦ୍ରିୟଙ୍କର ସ୍ୱତନ୍ତ୍ର ଦେବତା
ଶ୍ରୁତି ଶାସ୍ତ୍ର ପୁରାଣରେ ବର୍ଣ୍ଣିତ ଏକଥା ।

## ଏ ଗଳ୍ପ କାହିଁକି :

ଏଇଠି ପାଠକେ ଏହା କରିବେ ସ୍ମରଣ,
ଗୀତାର ଷୋଡ଼ଶାଧ୍ୟାୟେ କୃଷ୍ଣ ନାରାୟଣ,
ପାର୍ଥଙ୍କୁ କହିଲେ, "ଦୈବୀ ଅସୁର-ସମ୍ପଦ";
ଯାହା ମାନି ନେଲେ ଆଉ ନ ଥାଏ ବିପଦ ।

ମଣିଷର ଥାଏ ଯେତେ ପବିତ୍ର ଭାବନା,
ସେ ସବୁ ଦେବତା ରୂପେ କରିବ କଳ୍ପନା ।
ମନ୍ଦ ମନୋବୃତ୍ତି ଯେତେ ସେ ଅସୁର ଦଳ
ଦୁର୍ବଳତା ଦେଖି ହୃଦେ ହୁଅନ୍ତି ପ୍ରବଳ ।
ଏଇ ଦେବାସୁର ଯୁଦ୍ଧ ମଣିଷ ଅନ୍ତରେ
ଯୁଗକୁ ଯୁଗ ଯେ ଚାଲିଅଛି ନିରନ୍ତରେ ।

ଏଠାରେ ଏ ଶ୍ରୁତି ବାକ୍ୟେ ଏ ଗଳ୍ପ କଥନ
ନବାଗତ ସାଧକଙ୍କ ପାଇଁ ପ୍ରୟୋଜନ ।
ସାଧନାର ଆଦ୍ୟ ସ୍ତରେ ଯଦି କେ' ସାଧକେ,
ଦିବ୍ୟଗୁଣ ଅଧିକାରୀ ହୋଇ ସପୁଲକେ,
କୁପ୍ରବୃତ୍ତି ପରେ ସବୁ ଦମନ ଚଳାଇ
ଅନ୍ୟପାଶେ କହି କରି ପାରନ୍ତି ବଡାଇ;
"ମୁହିଁ କେତେ ଶକ୍ତିଶାଳୀ ମୁଁ ମହିମାନ୍ୱିତ,
ମୋ ମନ୍ଦ ବୃତ୍ତିକୁ କଲି ବିଜୟ ନିଶ୍ଚିତ ।"

ଆତ୍ମ-ବଳେ ସବୁ ଏହା ହୁଏ ଯେ ସାଧିତ
ଭ୍ରମ ବଶେ ସାଧକ ତା' ନ ଜାଣେ କିଞ୍ଚିତ ।
ଏପରି ସମୟେ ବ୍ରହ୍ମ ଦିବ୍ୟ ମୂର୍ତ୍ତି ଧରି
ସାଧକର ମନୁ ଭ୍ରାନ୍ତି ଛଡାନ୍ତି ଯେପରି ।

କାଳ୍ପନିକ ଯକ୍ଷ ମୂର୍ତ୍ତି ସ୍ୱରୂପ କଅଣ,
ଜାଣିବାକୁ ଇଚ୍ଛା କରି ଯେବେ ଦେବଗଣ,
ଅଗ୍ନିଙ୍କୁ ପଠାଇ ଯେହ୍ନେ ହୋଇଲେ ହତାଶ;
ତେହ୍ନେ ବ୍ରହ୍ମ ଉପଲବ୍ଧି ନିଷ୍ଫଳ ପ୍ରୟାସ ।
ନିଜର ଶକ୍ତିରେ ଅତି ଗର୍ବ କରି ବାୟୁ
ଦଗ୍ଧ କରି ପାରିଲେନି କୁଟା ଖଣ୍ଡି ଆଉ ।
ଅଗ୍ନି ବାୟୁ ଦେବ ପରେ ଇନ୍ଦ୍ର ଥିଲେ ଯାଇ
ଯେ ସୁରେଶ, ସେହି ''ମନ'', ଇନ୍ଦ୍ରିୟଙ୍କ ସାଇଁ ।
ଯେ ମନ ନିରହଂକାରୀ ଦୃଢ଼ ଓ ନିର୍ମଳ
ତହିଁ ଜ୍ଞାନ ପ୍ରାପ୍ତି ଆଶା ଉଜ୍ଜ୍ୱଳ କେବଳ ।

## ଦୃଷ୍ଟାନ୍ତ ଓ ପ୍ରତିମା :

ଅମୃତ ଅମୃତ ବୋଲି କହନ୍ତି ସରବେ
କିନ୍ତୁ କେ ନୟନେ ତାହା ଦେଖିଛି କି ଲବେ ?
ଅଜ୍ଞେୟ ସେପରି ବ୍ରହ୍ମ କେହି ତ ଦେଖିନି
ଜାଣିନି କେ, ଶୁଣିନି କେ, ଅବା କେ ଚାଖିନି ।
ଏପରି ବ୍ରହ୍ମଙ୍କୁ ଅନ୍ୟେ କହିବା କେସନେ
ସେଲାଗି 'ତୁଳା''''ଗଳ୍ପ'' ''ଦୃଷ୍ଟାନ୍ତ'' ଯେସନେ ।
ପ୍ରୟୋଗରେ ତାହା ସବୁ ନୁହନ୍ତି ତ ସତ
ଅଥବା ଏଥିରୁ ଜଣା ନ ପଡ଼ନ୍ତି ସତ୍ୟ ।
ତେବେ କାହିଁ ପାଇଁ ଏତେ କାହାଣୀ ଦୃଷ୍ଟାନ୍ତ
ପାଠକେ ତା' ଗଭୀରତା ବୁଝିବା କଥାତ ।

ଭକ୍ତି ମାର୍ଗେ ପ୍ରତିମା ବା ମୂର୍ତ୍ତି ଯେଉଁପରି
ଏଠାରେ ପ୍ରତିଟି ଗଳ୍ପ ଦୃଷ୍ଟାନ୍ତ ସେପରି ।
ଦେଉଳର ଯେ କୌଣସି ପଥରକୁ ଚାହିଁ
ଭକତ କି କେବେ ସୁଖ ଶାନ୍ତି ପାରେ ପାଇ ?

ହୃଦୟ ଭକତି ପାଇଁ ପ୍ରତିମା ପ୍ରଧାନ
ଭକ୍ତି ଲକ୍ଷ୍ୟ, ମୂର୍ତ୍ତି କିନ୍ତୁ ତାହାରି ସୋପାନ ।
ତୁଟାଇ ସଂସାର ମୋହ, ଆତ୍ମାରେ ମଜ୍ଜନ
କରିବାକୁ ପ୍ରତିମାର ହୁଏ ପ୍ରୟୋଜନ ।
ବ୍ରହ୍ମ ଉପଲବ୍ଧି ପାଇଁ ଦୃଷ୍ଟାନ୍ତ ତେସନେ;
ଦୃଷ୍ଟାନ୍ତ ନୁହଇ କିନ୍ତୁ 'ଜ୍ଞାନ' କଦାଚନେ ।

## ପ୍ରଥମ ଅନୁଭୂତି :

ଗୁରୁ ଉପଦେଶ ଅବା ଶାସ୍ତ୍ର ଅଧ୍ୟୟନେ
ବ୍ରହ୍ମ ଉପଲବ୍ଧି କେହି କରିନି ଜୀବନେ ।
କୌଣସି ବିମାନଛତା ବ୍ୟବହାରକାରୀ,
ଅଧିକ ଦକ୍ଷତା ଯେତେ ଥାଉ ବା ତାହାରି,
ଦିନେ ହୋଇଥିବ ତାର ପ୍ରଥମ ଦିବସ
ବିମାନରୁ ଖସି ଲଭିଥିବ ଭୂମିସ୍ପର୍ଶ ।
କିନ୍ତୁ ଯେତେ ଦିନ ଶିକ୍ଷା-ନବିସ ରହଇ,
ଲମ୍ଫଦାନ କ୍ରିୟା ଜ୍ଞାନ ନିରତେ ଲଭଇ;
ମନରୁ ତିଆଗି ଭୟ ସାହସ ସକାଶେ
କୁହା ଯାଇଥିବ ସବୁ ବିଜ୍ଞାନ ତା' ପାଶେ ।
ଆକ୍ଷିରେ ବି ଦେଖିଥିବ ତାର ସାଙ୍ଗ ସାଥି,
ବିମାନରୁ ଡେଇଁ କେହ୍ନେ ତଳକୁ ଓହ୍ଲାନ୍ତି ।

ତଥାପି ତାହାର ପୂରା ନ ଥିବ ସାହସ
ଶିକ୍ଷା ପାଇ ଥାଉ ପଛେ ବରଷ ବରଷ ।
ଆଦ୍ୟ-ଲମ୍ଫ ପାଇଁ ଯେବେ ଆସଇ ସମୟ
ଛାତି ଥରି ଉଠେ ଭୟେ, ହୁଅଇ ଅଥୟ ।
ସେବେ ତାକୁ ତା' ଶିକ୍ଷକ, ସାଙ୍ଗ ସାଥୀ ତାର
ଠେଲା ଦର୍କା ବାଟେ ଠେଲି କରନ୍ତି ବାହାର ।

ଶୂନ୍ୟେ ଖସି ଗଲା ପରେ ପଛ ପାଠ ପଢ଼ା
ସେତେବେଳେ କାମରେ ତା ଲାଗିଯାଏ ପରା ।
ନୂଆ ଅନୁଭୂତିର ଏ ନୂଆ ପୃଥିବୀରେ
ସ୍ୱାଭାବିକ ଗତିରେ ସେ ଖସେ ଧୀରେ ଧୀରେ ।
ଏହିପରି କେତେବାର ଓହ୍ଲାଇବା ପରେ
ଦମ୍ଭ ଓ ଦକ୍ଷତା ଭରି ଉଠଇ ମନରେ ।

ଆତ୍ମ-ଜ୍ଞାନ ଶିକ୍ଷାନବିସଙ୍କୁ ସେହିପରି,
ଉପଲବ୍ଧି ଆଣେ ଗୁରୁ ଠେଲନ୍ତି ଯେପରି ।
ଇନ୍ଦ୍ର ଏ ଗଳ୍ପରେ ଶିକ୍ଷାନବିସ ଯେସନେ
"ସେ ଅଟନ୍ତି ବ୍ରହ୍ମ" କହି ଉମା ଗଲେ କ୍ଷଣେ ।

**ସା ବ୍ରହ୍ମେତି ହୋବାଚ । ବ୍ରହ୍ମଣୋ ବା ଏତଦ୍‌ବିଜୟେ ମହୀୟଧ୍ୱମିତି ।**
**ତତୋ ହୈବ ବିଦାଞ୍ଚକାର ବ୍ରହ୍ମେତି ॥ ୧ ॥**

"ସେ ବ୍ରହ୍ମ" କହିଲେ ଉମା; "ବ୍ରହ୍ମଙ୍କ ବିଜୟେ
ହୋଇଛ ମହିମାନ୍ୱିତ ତୁମେସି ହୃଦୟେ- ।"
ଉମାଙ୍କ କଥାରୁ ତହୁଁ ଇନ୍ଦ୍ର ସୁରପତି,
କେବଳ ପାରିଲେ ଜାଣି: ସେ ବ୍ରହ୍ମ ଅଟନ୍ତି ॥ ୨ ॥

ପ୍ରଥମେ ଇନ୍ଦ୍ରଙ୍କୁ ଉମା କହିଲେ ଉତ୍ତରେ
''ସେ ବ୍ରହ୍ମ', ଯା' ପାଇଁ ତମେ ଜିଣିଲ ସମରେ ।
ସେହି ତ କାରଣ, ସେହି ଶକ୍ତିର ଆକର
ତାଙ୍କ ହାତେ ତୁମେ କ୍ରୀଡା-ପୁତ୍ତଳି କେବଳ ।
ତୁମେ ଭାବୁଥିଛ ଏହି ବିଜୟ ତୁମର
ସେଥିପାଇଁ ତମେ ପୁଣି ମନେ ଗର୍ବ କର ।
ସବୁ ଭ୍ରମ, ସବୁ ତୁମ ଅଜ୍ଞତା ଅଟଇ
ଅଜ୍ଞାନରୁ ବୃଥା ଗର୍ବ ହୃଦେ ଅଛ ବହି !''

ଇନ୍ଦ୍ର ବୁଝିଗଲେ ତହୁଁ ଦେବତାଙ୍କ ଭୁଲ,
ବୃଥାରେ ବିଜୟ ଗର୍ବେ ହେବା ମତ୍ତଗୁଲ ।
ବିଜୟ କାରଣ ବ୍ରହ୍ମ, ତାଙ୍କ ଅନିଚ୍ଛାରେ
କ୍ଷୁଦ୍ର ତୃଣଟିଏ ହେଲେ ନ ହଲେ ସଂସାରେ ।
ଉମା ସ୍ୱରୂପିଣୀ ବୁଦ୍ଧି-ବିଚାର-ବିବେକ,
ଇନ୍ଦ୍ରଙ୍କ ହୃଦୟେ ଯେବେ ହୋଇଲା ଉଦ୍ରେକ,
ସେତେବେଳେ ବ୍ରହ୍ମଙ୍କୁ ସେ ଜାଣିଲେ କେବଳ -
ବ୍ରହ୍ମଙ୍କ ବିଜୟେ ଦେବେ ନିମିତ୍ତ ମାତର ।
ସକଳ ଶକ୍ତିର ଉତ୍ସ ବ୍ରହ୍ମ ଭଗବାନ,
ବ୍ରହ୍ମଙ୍କ ଶକ୍ତିରେ ମାତ୍ର ଦେବେ ଶକ୍ତିମାନ ।

**ତସ୍ମାଦ୍ ବା ଏତେ ଦେବା ଅତିତରାମିବାନ୍ୟାନ୍ ଦେବାନ୍ ଯଦଗ୍ନିର୍ବାୟୁରିନ୍ଦ୍ରଃ ତେ ହ୍ୟେନନ୍ନେଦିଷ୍ଠଂ ପସ୍ପୃଶୁସ୍ତେ ହ୍ୟେନତ୍ ପ୍ରଥମୋ ବିଦାଞ୍ଚକାର ବ୍ରହ୍ମେତି ॥ ୨ ॥**

ଯେଣୁ ଅଗ୍ନି ବାୟୁ ଇନ୍ଦ୍ର-ଏ ତିନି ଦେବତା,
ବ୍ରହ୍ମ ସଂସ୍ପର୍ଶରେ ଆସି ହୋଇଥିଲେ କଥା,
ପୁଣି ଯେଣୁ ଆଦ୍ୟେ ଇନ୍ଦ୍ର, ଅଗ୍ନି ବାୟୁ ପରେ,
ପ୍ରଥମେ ତାହାଙ୍କୁ ବ୍ରହ୍ମ ବୋଲି ଜାଣିଗଲେ;

ତେଣୁ ଅଗ୍ନି ବାୟୁ ଇନ୍ଦ୍ର ଏ ତିନି ଦେବତା,
ଅନ୍ୟ ଦେବତାଙ୍କଠାରୁ ଲଭିଲେ ଶ୍ରେଷ୍ଠତା ।
ଏହି ଦେବଗଣେ ବ୍ରହ୍ମ ସଂସ୍ପର୍ଶରେ ଆସି
ଯକ୍ଷ, "ବ୍ରହ୍ମ" ବୋଲି ଥିଲେ ପ୍ରଥମେ ପ୍ରକାଶି ।

ବ୍ରହ୍ମ ସଂସ୍ପର୍ଶରେ ଆସି ଏ ତିନି ଦେବତା,
ଅନ୍ୟ ଦେବତାଙ୍କ ମଧ୍ୟେ ଲଭିଲେ ଶ୍ରେଷ୍ଠତା ।
ଜ୍ଞାନର ଉତ୍କର୍ଷ ଫଳେ ବୀର୍ଯ୍ୟ ବିକଶିତ
ନାନାଦି ସଦ୍‌ଗୁଣେ ଚିତ୍ତ ହୁଅଇ ଭୂଷିତ ।
ଅନ୍ୟ ଦେବତାଙ୍କ ଠାରୁ ଏ ତିନି ଦେବତା
ଜ୍ଞାନେ ବୀର୍ଯ୍ୟେ ପରାକ୍ରମେ ଲଭନ୍ତି ଶ୍ରେଷ୍ଠତା ।

## ମନ୍ତ୍ର ତିନି

**ତସ୍ମାଦ୍ ବା ଇନ୍ଦ୍ରୋଽତିତରାମିବାନ୍ୟାନ୍ ଦେବାନ୍ । ସ ହ୍ୟେନନ୍ନେଦିଷ୍ଠଂ ପସ୍ପର୍ଶସ ହ୍ୟେନତ୍ ପ୍ରଥମୋ ବିଦାଞ୍ଚକାର ବ୍ରହ୍ମେତି ॥୩॥**

କଲେ ସ୍ପର୍ଶ ଯେଣୁ ତାଙ୍କୁ ଅତି ନିକଟରେ
ଜାଣିଲେ ସେ ବ୍ରହ୍ମ ବୋଲି ପୁଣି ପ୍ରଥମରେ
ତେଣୁ ଇନ୍ଦ୍ର ଅନ୍ୟ ସବୁ ଦେବତା ନିକଟରେ
ଉତ୍କର୍ଷତା ଲଭିବାରେ ଅତିକ୍ରମି ଗଲେ ।

ବ୍ରହ୍ମଙ୍କୁ ଜାଣିଲେ ଅଗ୍ନି ପବନ ଦେବତା
ଯେତେବେଳେ ଇନ୍ଦ୍ର ତାଙ୍କୁ କହିଲେ ଏ କଥା ।
ଉମାଙ୍କ କଥାରୁ ଇନ୍ଦ୍ର ଦେବତା ତେସନେ
ସିଏ "ବ୍ରହ୍ମ" ବୋଲି ଜାଣି ପାରିଲେ ପ୍ରଥମେ ।
ତେଣୁ ଅନ୍ୟ ଦେବେ ଟପି ଏ ଇନ୍ଦ୍ର ଦେବତା,
ଜ୍ଞାନେ ବୀର୍ଯ୍ୟେ କଲେ ଲାଭ ଅଧିକ ଶ୍ରେଷ୍ଠତା ।
ବ୍ରହ୍ମଙ୍କୁ ପ୍ରଥମେ ଇନ୍ଦ୍ର ଜାଣିବାର ପାଇଁ
ତାଙ୍କ ଅତି ନିକଟକୁ ପରା ଥିଲେ ଯାଇ ।

## ମନ୍ତ୍ର ଚାରି

**ତସ୍ୟୈଷ ଆଦେଶୋ - ଯଦେତଦ୍ୱିଦ୍ୟୁତୋ ବ୍ୟଦ୍ୟୁତଦା ଇତୀନ୍ୟମୀମିଷଦା ଇତ୍ୟଧିଦୈବତମ୍ ॥ ୪ ॥**

ସେ ବ୍ରହ୍ମଙ୍କ ବିଷୟରେ ଏ ଏକ ଆଦେଶ,
(ଆଦେଶର ଅର୍ଥ ଉପମାରେ ଉପଦେଶ;)
ଏଇ ଯେ ବିଜୁଳି କ୍ଷଣେ ଉଠିଲା ଚମକି,
ତାହାରି ସଦୃଶ ଅବା ହୋଇବେ ବ୍ରହ୍ମ କି ॥
ବ୍ରହ୍ମଙ୍କର ଆଉ ଅନ୍ୟ ଆଦେଶ ଅଟଇ -
ଏଇ ଯେ ନିମିଷେ ଆଖି ପିଛୁଳା ପଡଇ ।
ତାହାରି ସଦୃଶ - ଏହି ଶ୍ରୁତିର ଆଦେଶ
ବ୍ରହ୍ମଙ୍କ ଦେବତା- ବିଷୟକ ଉପଦେଶ ॥ ୪ ॥

**ଦେବାସୁର** ଆଖ୍ୟାୟିକା ଗୁଛି ଏ ଗ୍ରନ୍ଥରେ
ଶ୍ରୁତିଙ୍କ ଆଦେଶ ଦିଆ ଯାଇଛି ଶେଷରେ ।
ତେଣୁ ଏ କଥିତ ଆଧିଦୈବିକ ଆଦେଶ
ହୃଦୟରେ ବ୍ରହ୍ମଙ୍କର ପ୍ରକାଶ ବିଶେଷ ।

ଜାଗତିକ ଉପମାରେ ଅରୂପ ବ୍ରହ୍ମଙ୍କୁ
ପ୍ରକାଶ କରିବା ପାଇଁ ଯେତେ ଉଦ୍ୟମକୁ
ଶ୍ରୁତିରେ "ଆଦେଶ" ବୋଲି ହୁଅଇ କଥିତ;
ଏ ମନ୍ତ୍ରେ ସେପରି ଦୁଇ ଆଦେଶ ଅଛିତ ।
ବ୍ରହ୍ମଙ୍କର ଉପଲବ୍ଧି ହୁଅଇ ତେସନେ
"ଚାହିଁ କରି ଚମକଇ ବିଜୁଳି ଯେସନେ ।"-
"ଆଖି ପିଛୁଳାକେ ଯେହ୍ନେ ପଲକ ପଡଇ",
ତେସନ ପ୍ରକାରେ ବ୍ରହ୍ମ ହୃଦେ ପ୍ରକାଶଇ ।

ବିଦ୍ୟୁତ ଚମକେ ଆଉ ଚକ୍ଷୁର ନିମେଷେ
ବ୍ରହ୍ମଙ୍କ ଉପମା ଦିଆ ଯାଇଅଛି ଶେଷେ ।
ଉଭୟେ ପ୍ରକାଶମୟ କ୍ଷଣିକ ଯେପରି
ବ୍ରହ୍ମ ତ ପ୍ରକାଶମୟ କ୍ଷଣିକ ସେପରି ।
ଦେବତାଙ୍କ ଆଗେ ବ୍ରହ୍ମ କ୍ଷଣକ ନିମିତ୍ତ
ଉଭା ହୋଇ ପରେ ପୁଣି ହେଲେ ତିରୋହିତ ।
ମୋହ ଅଂହକାର ମନ ମଳିନତା ପାଇଁ
ଦେବତାଏ ସେ ବ୍ରହ୍ମଙ୍କୁ ଚିହ୍ନିଲେ ତ ନାହିଁ ।

ବିଜୁଳି ମାରଇ ଯେବେ ଅନନ୍ତ ଆକାଶେ
ସସାଗରା ଧରାରେ ତା' ପ୍ରଭା ପରକାଶେ ।
ହେଲେ ବି କ୍ଷଣିକ, ତାର ଉଜ୍ଜ୍ୱଳ ଆଲୋକେ
ଝଲସାଇ ଦିଅଇ ତ ସମଗ୍ର ଭୂଲୋକେ ।
ତେସନେ ବ୍ରହ୍ମୋପଲବ୍ଧି ହୋଇଗଲେ ଥରେ
ଉଦ୍ଭାସିତ କରେ ତାହା ବାହାର ଅନ୍ତରେ ।
ଅନ୍ତରେ ହୋଇଲେ ଥରେ ସତ୍ୟ ପ୍ରତିଭାତ
ଜଣା ଓ ଅଜଣା କିଛି ଆଉ ରହେନା ତ ।
କେବଳ ସେ, ସୋଽହଂ, ବ୍ରହ୍ମ, ଅଦ୍ୱିତୀୟ
ଦେହ ମନ ନାହିଁ କିଛି ସବୁ ତ ତୁରୀୟ ।
ପ୍ରତ୍ୟେକ ବିଷୟ-ଜ୍ଞାନେ ପ୍ରତୀତି ସହିତ
ଜୀବ ହୃଦେ ବ୍ରହ୍ମ ହୋଇଥାନ୍ତି ପ୍ରକାଶିତ ।
ମାତ୍ରକ ବିଷୟେ ଅତି ମଜ୍ଜିବା କାରଣେ,
ପୁଣି ଚିର ମଳିନତା ହେତୁ ଜୀବଗଣେ,
ବ୍ରହ୍ମ ଉପଲବ୍ଧି କରି ପାରନ୍ତିନି ବାରେ
ଜୀବନ ହୁଅଇ ଶେଷ ନିରାଶା ଅନ୍ଧାରେ ।

## ମନ୍ତ୍ର ପାଞ୍ଚ

**ଅଥାଧ୍ୟାତ୍ମଂ ଯଦେତଦ୍ ଗଚ୍ଛତୀବ ଚ ମନୋଽନେନ**
**ଚୈତ ଦୁପସ୍ମରତ୍ୟଭୀକ୍ଷ୍ଣଂ ସଂକଳ୍ପଃ ॥ ୫ ॥**

ତାହାପରେ ବ୍ରହ୍ମଙ୍କର ଆଧ୍ୟାତ୍ମ-ଆଦେଶ
ଏହା ଆତ୍ମ-ବିଷୟକ ଅନ୍ୟ ଉପଦେଶ ।
ଦ୍ରୁତ ଭାବେ ଏହି ମନେ ବ୍ରହ୍ମଙ୍କ ଚିନ୍ତନ -
ଆଉ ଦ୍ରୁତେ କରେ ମନ ଯେସନେ ମନନ ॥

ଇଚ୍ଛାଶକ୍ତି ବଳେ ଏଇ ମନର ମନନେ,
ବ୍ରହ୍ମବୋଧ ହୁଏ ଅବା ନିରତ ସ୍ମରଣେ ।
ପୂର୍ବ ମନ୍ତ୍ରେ ଥିଲା ଯେହ୍ନେ ବ୍ରହ୍ମଙ୍କ ଉପମା
ବିଦ୍ୟୁତ୍ ଚମକ ଆଉ ନିମେଷ ତୁଳନା ।
ଏଠାରେ ତେସନେ ଦ୍ରୁତ ମନର ମନନେ
ବ୍ରହ୍ମଙ୍କ ଉପମା ଦିଏ ଶ୍ରୁତି 'ଅଭିକ୍ଷଣେ ।'
ନିଜ ମନୋବୃତ୍ତିରେ ଏ ମଣିଷର ମନେ
ବୋଧ ଜାତ ହୁଏ-"ବ୍ରହ୍ମେ ପାଇଛି ଯେସନେ" ।
ସେ ଭାବେ, "ତା ମନ ଯେହ୍ନେ ବ୍ରହ୍ମଙ୍କୁ ଧରିଛି",
ପୁଣି ସେହି ମନ ବ୍ରହ୍ମେ ପ୍ରବିଷ୍ଟ ହୋଇଛି ।
ଏଥିପାଇଁ ବ୍ରହ୍ମଙ୍କୁ ସେ ମନ ସାହାଯ୍ୟରେ
ଅବିରତ ପୁଣି ପୁଣି ସୁମରଣ କରେ ।
ଏହି ତ ମନରେ ବ୍ରହ୍ମ ବିଷୟେ ଚିନ୍ତନ
କିନ୍ତୁ ମନେ ତାହାଙ୍କୁ କେ ପାଇବ କେସନ ?

ତଥାପି ଏପରି ବ୍ରହ୍ମ ଚିନ୍ତନେ ସ୍ମରଣେ
ସାଧକ ଉଦ୍ୟମ ଯାଏ ନାହିଁ ଅକାରଣେ ।
କାରଣ ଏ 'ମନ' ବ୍ରହ୍ମ ଅଭିବ୍ୟକ୍ତି ସ୍ଥାନ
ଏ ମନେ କେବଳ ବ୍ରହ୍ମେ କରି ହୁଏ ଧ୍ୟାନ ।

ପ୍ରତି ପ୍ରତି ବିଷୟର ପ୍ରତୀତି ସହିତ
ବ୍ରହ୍ମହିଁ କେବଳ ହୋଇଥାନ୍ତି ପ୍ରକାଶିତ ।

କିନ୍ତୁ ଜୀବ ବିଷୟରେ ମଜ୍ଜିବା କାରଣେ,
ଚିର ମଳ ମଳିନତା ସକାଶୁଁ ଜୀବନେ,
ବ୍ରହ୍ମ ଉପଲବ୍ଧି କରି ପାରେ ନାହିଁ ବାରେ,
ଜୀବନ ହୁଅଇ ଶେଷ ନିରାଶା ଅନ୍ଧାରେ ।

ବ୍ରହ୍ମଙ୍କୁ ଜାଣିବା ଇଚ୍ଛା ହୋଇଲେ ପ୍ରବଳ
ଜୀବ ହୃଦେ 'ବୋଧ ଶକ୍ତି' ହୁଅଇ ପ୍ରଖର ।
ଏପରି ନିର୍ମଳ ଚିତ୍ତେ ହୁଅଇ ସମ୍ଭବ
କାହିଁ କେତେବେଳେ ଅବା ବ୍ରହ୍ମ ଅନୁଭବ ।

ମଣିଷ ଯେ ଭାବେ,- ବ୍ରହ୍ମ ପ୍ରବେଶ ମୋ ମନେ,
ବ୍ରହ୍ମଙ୍କୁ ମୋ ମନ ଧରି ରଖିଛି ତେସନେ ।
କରୁଛି ବ୍ରହ୍ମଙ୍କ ଚିନ୍ତା ଭଜନ ସ୍ମରଣ,
ଏ ମନୋବୃତ୍ତିର ଅଛି ବିଶେଷ କାରଣ ।

ପ୍ରତ୍ୟେକଟି ବିଷୟର ପ୍ରତୀତି ସହିତ,
ଜୀବ ହୃଦେ ବ୍ରହ୍ମ ହୋଇଥାନ୍ତି ପ୍ରକାଶିତ ।
ଏ ଭାବେ ନିଜକୁ ବ୍ରହ୍ମ ନ କଲେ ପ୍ରକାଶ
ତେବେ ଏ ମଣିଷ କେହ୍ନେ କରନ୍ତା ବିଶ୍ୱାସ -
'ତାଙ୍କୁ ପାଇଅଛି ମନେ' - ଏ ରୂପ ଚିନ୍ତନ
କିପରି ହୁଅନ୍ତା ଆଉ ସ୍ମରଣ ମନନ ?

ବିଦ୍ୟୁତ ଝଲକ ଦିଏ ଆଖି ଝଲସାଇ
ତାହାର ଦୀପ୍ତତା ଆଉ କ୍ଷିପ୍ରତା ମିଶାଇ ।

ବ୍ରହ୍ମ ଆବିର୍ଭାବ ଯଦି ହୁଅନ୍ତି ଏସନେ
ସାଧକ ଏଥିରେ ତାଙ୍କୁ ଲଭିବେ କେସନେ ?
ଜ୍ଞାନ-ପଥ ପାଇ ଅବା ସାଧକ ସଂସାରେ
ମନ ସାହାଯ୍ୟରେ ବ୍ରହ୍ମ ପାଶେ ଯାଇପାରେ ।

କହି ନୋହୁଥିବା ବ୍ରହ୍ମେ କେବଳ ଏ ମନ
କିଛି କିଛି ଅବା କରି ପାରିବ ଚିନ୍ତନ ।
ମନ ଯେଣୁ ଦ୍ରୁତଗାମୀ, ତେଣୁ ବ୍ରହ୍ମଙ୍କର
ଅନୁଗମନ ସେ କରି ପାରିବ କେବଳ ।
ବ୍ରହ୍ମଙ୍କର ଚିନ୍ତା ହୋଇ ପାରିବ ଏ ମନେ,
ମନେ ତାଙ୍କ ଧ୍ୟାନ ହୋଇ ପାରିବ ତେସନେ ।
ଏ ମନେ ବ୍ରହ୍ମଙ୍କ ଚିନ୍ତା କଲେ ଅବିରତ
ମନ ସୁନିର୍ମଳ ହୋଇ ରହଇ ସତତ ।
ନିରିମଳ ଦରପଣେ ପ୍ରତିବିମ୍ବ ପରି,
ଦିବ୍ୟ ବ୍ରହ୍ମ ଦ୍ୟୁତି ମନେ ଝଳଇ ସେପରି ।।

## ମନର ସ୍ୱରୂପ :

ଏ ମନ ଚୈତନ୍ୟ ସାଥେ ଜୀବନ୍ତ ପରାୟେ
ଇନ୍ଦ୍ରିୟଙ୍କୁ ଧରି ବାହ୍ୟ ଜଗତେ ପଳାଏ ।
ତହିଁ ବସ୍ତୁ ପାଶେ ଯାଇ ଧରେ ବସ୍ତୁ ରୂପ
ଏପରି କ୍ଷଣିକେ ତାର ବଦଳେ ସ୍ୱରୂପ ।
ମଣିଷ ମନର ନାହିଁ ବିଶ୍ରାମ ଟିକିଏ,
ସଦା ଅସ୍ଥିରତା ତାର ନ ଜାଣିଛି କିଏ ?
ଅତଃ ସ୍ଥିରତାରୁ ଜାଗେ ଅସୀମ ଆନନ୍ଦ
ଅଶେଷ ପ୍ରଶାନ୍ତି ଭରେ, ଝରେ ମକରନ୍ଦ ।
ଲହଡି ବିହୀନେ ନାହିଁ ସାଗର ଯେସନେ
ଭାବନା ବିହୁନେ ମନ ନ ଥାଏ ତେସନେ ।

ଏକ ଲହଡିର ଅନ୍ତେ ଉଠେ ଆଉ ଏକ
ଏକ ପରେ ଏକ ଏକ ଉଠଇ ଅନେକ ।
ଭାବନାର ଅବିରତ ଧାରାହି ତ ମନ
ଭାବନା ବିହୁନେ ମନ ରହିବ କେସନ ?
ଶ୍ରୁତି କହେ ଯେତେବେଳେ ନ ରହଇ ମନ
ଯୋଗୀଏ ଲଭନ୍ତି ତେବେ ବ୍ରହ୍ମ ଦରଶନ ।
ବ୍ରହ୍ମଙ୍କ ପ୍ରକାଶ ଆଉ ଅପ୍ରକାଶ ପାଇଁ
ଶ୍ରୁତି ଏହି "ଅଭିକ୍ଷଣ" ଶବ୍ଦ ଦେଇଥାଇ ।
ବ୍ରହ୍ମଙ୍କର କ୍ଷଣ ସମୁଜ୍ଜ୍ୱଳ ସ୍ଥିତି ନେଇ
କିପରି ମନୋଜ୍ଞ ଆଉ ଉପଯୁକ୍ତ ଏହି ।
"ମୋ ମନ ସଂକଳ୍ପ ବ୍ରହ୍ମ ବିଷୟେ ହେଉଛି"
ସାଧକର ଏହି ରୂପ ଧ୍ୟାନେ ହେଉ ରୁଚି ।
"ମୋ ମନେ ଅଛନ୍ତି ବ୍ରହ୍ମ"-ବୋଲି ଏ ଚିନ୍ତନେ
ବ୍ରହ୍ମ ସ୍ମୃତି ସଂକଳ୍ପର ବୃତ୍ତିରେ ତେସନେ,
ଧରା ଦେଇ ଅନୁଭବ୍ୟ ହୁଅନ୍ତି ଏ ମନେ,
ସାଧକର ଅପାର୍ଥିବ-ସମ୍ପତ୍ତି ଯେସନେ ।।

**ମନ୍ତ୍ର ଛଅ**

**ତଦ୍ଧ ତଦ୍‌ବନଂ ନାମ, ତଦ୍‌ବନମିତ୍ୟୁପାସିତବ୍ୟମ୍ । ସ ଯ ଏତଦେବଂ ବେଦାଭି ହୈନଂ ସର୍ବାଣି ଭୂତାନି ସଂବାଞ୍ଛନ୍ତି ।। ୬ ।।**

ବ୍ରହ୍ମ, ପ୍ରାଣୀଗଣ ପ୍ରିୟ ଭଜନୀୟ ଅତି,
ସକଳେ ତାହାଙ୍କୁ ତେଣୁ "ତଦ୍‌ବନ" କହନ୍ତି ।
"ତଦ୍‌ବନ" ନାମରେ ତାଙ୍କ ପୂଜା ଆବଶ୍ୟକ
ଏ ଶବ୍ଦ ଯେ ହେତୁ ତାଙ୍କ ଗୁଣ ପ୍ରକାଶକ ।
ବ୍ରହ୍ମଙ୍କୁ ଏପରି ଜାଣିଥାନ୍ତି ଯେଉଁ ଜନ,
ତାଙ୍କ ସାନ୍ନିଧ୍ୟକୁ ସର୍ବେ କରିଥାନ୍ତି ମନ ।

ଏ ଶ୍ରୁତିରେ ବ୍ରହ୍ମ ଉପାସନା ବିଧି ଫଳ
ଶିଷ୍ୟଙ୍କୁ ବୁଝାଇ ଗୁରୁ କହନ୍ତି ସକଳ ।
'ଉପାସନା ' ଶବ୍ଦଟିରୁ ଏ ଅର୍ଥ ସୂଚୀତ
ପୂଜିବା ସକାଶେ ସମୀପରେ ହେବା ସ୍ଥିତ ।
ସଗୁଣ ଆକାର ଥାଗେ ସିନା କେ ବସଇ,
ନିର୍ଗୁଣ ଅରୂପେ କିନ୍ତୁ କେ' କେହ୍ନେ ପୂଜଇ ?
ବ୍ରହ୍ମ ଯେ ନିର୍ଗୁଣ ନାମହୀନ ନିର୍ବିଶେଷ,
ତେଣୁ ତାଙ୍କ ଉପାସନା ନ ହୁଏ ବିଶେଷ ।

ସଗୁଣ ବ୍ରହ୍ମଙ୍କ କରାହୁଏ ଉପାସନା,
ସେଥିପାଇଁ ଶ୍ରୁତିର ଏ ''ତଦ୍‌ବନ''କଳ୍ପନା ।
'ତଦ୍‌ବନ' ଅର୍ଥାତ୍ ସେହି ପ୍ରିୟ ବସ୍ତୁ ରୂପେ
ବ୍ରହ୍ମ ପ୍ରାଣୀଗଣ-ପ୍ରିୟ ଅଟନ୍ତି ସ୍ୱରୂପେ ।
ସେହି ଏକା ପ୍ରିୟତମ ଅଖିଳ ଅନ୍ତରେ
ସର୍ବ ଭୂତେ ସ୍ଥିତ ସେହି ଆତ୍ମା ସ୍ୱରୂପରେ ।
ସର୍ବଜ୍ଞାନ ପ୍ରକାଶକ ସର୍ବ ଶକ୍ତିଦାତା,
ସେ ପରମ ପିତା ସର୍ବଜୀବ ପରିତ୍ରାତା ।

ତେଣୁ ସେ ସଭିଙ୍କ ପ୍ରିୟ ଭଜନୀୟ ଅତି,
ଜଗତେ ତାଙ୍କର କେହି ଅପ୍ରିୟ ନୁହନ୍ତି ।
ତାଙ୍କର ଏ ସବୁ ଗୁଣ ଜାଣି ହୃଦଗତେ,
ପୂଜନ୍ତି ''ତଦ୍‌ବନ''ନାମେ ସେ ଯେଉଁ ଭକତେ,
ସେ ତ ଏକ ହୋଇଯାନ୍ତି ବ୍ରହ୍ମଙ୍କ ସହିତେ
ତାଙ୍କଠୁଁ ଝରଇ ପ୍ରେମ ସୁଧା ଅବିରତେ ।
ଏ ଭକତେ ବ୍ରହ୍ମଙ୍କର ପ୍ରିୟ ଗୁଣାବଳି,
ଆଦରେ ସବୁକୁ ଅତି ଆପଣାର କରି,

ଜଗତେ ଚଳନ୍ତି ଯେଣୁ, ଏ ଜଗତବାସୀ
ତାହାଙ୍କ ସାନ୍ନିଧ ପାଇଁ ହୁଅନ୍ତି ପ୍ରୟାସୀ ।
ଭାବନ୍ତି ସେ ତାଙ୍କୁ "ବ୍ରହ୍ମ" ସଗୁଣ ରୂପରେ
କରନ୍ତି କି ଅବା ଲୀଳା ନର କଳେବରେ ॥

## ମନ୍ତ୍ର ସାତ

**ଉପନିଷଦଂ ଭୋ ବ୍ରୂହୀତ୍ୟୁକ୍ତା ତ ଉପନିଷଦ୍ ବ୍ରାହ୍ମୀ ବାବତ ତ ଉପନିଷଦମବ୍ରୂମେତି ॥ ୭ ॥**

ତା ଶୁଣି କହିଲେ ଶିଷ୍ୟ, "ହେ ପରମାସ୍ପଦ
ଦୟାକରି ଶିକ୍ଷା ଦିଅ ଯା' ଉପନିଷଦ ।"
ଉତ୍ତରେ ଆଚାର୍ଯ୍ୟ ତହୁଁ କହିଲେ ଶିଷ୍ୟଙ୍କୁ,
"ସେ ଉପନିଷଦ କୁହା ହୋଇଛି ତୁମକୁ ।"
ଏ ନିଶ୍ଚିତ କଥା, ନାହିଁ ସଂଶୟ ତ କିଛି,
ବ୍ରହ୍ମ ବିଷୟକ ଉପନିଷଦ କହିଛି" ॥ ୭ ॥

**ଶୁଣିଲେ** ଗୁରୁଙ୍କ ମୁଖୁଁ ସକଳ ବିଷୟ,
ରହିଗଲା ଶିଷ୍ୟଙ୍କର ତଥାପି ସଂଶୟ ।
'ରହସ୍ୟ-ବିଦ୍ୟା' ତ ଉପନିଷଦ ଅଟଇ
ତାହା କି ଆଚାର୍ଯ୍ୟ ମୋତେ ନ ଅଛନ୍ତି କହି ?
କୁହା କି ହୋଇଛି ଉପନିଷଦ ସକଳ,
ଅବା ଆଉ କିଛି ବାକି ଅଛି ଏ ତତ୍ତ୍ୱର ?
ସଂଦିଗ୍ଧ ମନରେ ତେଣୁ ଶିଷ୍ୟ ପଚାରନ୍ତି -
"କହ ଗୁରୁ ଆଉ ଉପନିଷଦ କି ଅଛି ?"
ଶିଷ୍ୟଙ୍କୁ ଆଚାର୍ଯ୍ୟ ତାହୁଁ କହିଲେ ଉତ୍ତରେ,
"ଯାହା କୁହାଗଲା ସବୁ ତୁମ ନିକଟରେ,
ସେ ଉପନିଷଦ ସବୁ, ବ୍ରହ୍ମବିଦ୍ୟା ସେହି,
"ବ୍ରାହ୍ମୀବାକ୍" ବୋଲିମଧ୍ୟକହିଥାନ୍ତିକେହି ।"

ଶିଷ୍ୟଙ୍କର ଅଭିପ୍ରାୟ ସମ୍ବନ୍ଧେ ଶଙ୍କର
ଏଠାରେ ମୌଳିକ ମତ ଦିଅନ୍ତି ତାଙ୍କର -
ଯେ ଉପନିଷଦ ପୂର୍ବେ ହୋଇଲା ବର୍ଣ୍ଣନ,
ସହକାରୀ ସାଧନା କି ତାର ପ୍ରୟୋଜନ ?
ଯେବେ କିଛି ଥାଏ ପ୍ରଭୁ କହନ୍ତୁ ବୁଝାଇ
ପ୍ରିୟ ଶିଷ୍ୟ ପଚାରିଲେ ଏ ପ୍ରଶ୍ନ ସେ ପାଇଁ ।

ପରବର୍ତ୍ତୀ ମନ୍ତ୍ରେ ତେଣୁ ଆଚାର୍ଯ୍ୟ ଉତ୍ତରେ
କହିଛନ୍ତି ତପ, ଦମ, କର୍ମ ସମ୍ବନ୍ଧରେ ।
କିନ୍ତୁ ପ୍ରକୃତରେ ବ୍ରହ୍ମଜ୍ଞାନ ଲାଭ ପାଇଁ
ସହକାରୀ ସାଧନର ପ୍ରୟୋଜନ ନାହିଁ ।
ସେ ସବୁ ଉପାୟ ମାତ୍ର, ଏ ଜ୍ଞାନ ନିମନ୍ତେ
ବେଦ ଓ ବେଦାଙ୍ଗ ପାଠ, ତପସ୍ୟା ସେ ଅର୍ଥେ ।
ଏ ଜ୍ଞାନେ ସାଧକ ଯେବେ ରହନ୍ତି ନିମଜ୍ଜି
କ୍ରିୟା ଓ କାରକ କର୍ମଫଳ ଯାଏ ହଜି ।
ବ୍ରହ୍ମବିଦ୍ୟା ହୋଇଥାଏ ଶେଷ ଆତ୍ମ-ଜ୍ଞାନେ,
କିଛି କର୍ମ ପ୍ରୟୋଜନ ହୁଏନି ସେ ସ୍ଥାନେ ॥

## ମନ୍ତ୍ର ଆଠ

**ତସ୍ୟୈ ତପୋ ଦମଃ କର୍ମେତି ପ୍ରତିଷ୍ଠା, ବେଦାଃ
ସର୍ବାଙ୍ଗାନି, ସତ୍ୟମାୟତନମ୍ ॥ ୮ ॥**

ତପ ଦମ ଆଉ ପୁଣି ନିଷ୍କାମ କରମ
ସେହି ଉପନିଷଦର ଜାଣ ପାଦ ସମ ।
ଚାରିବେଦ ସେ ଦେହର ନାନା ଅଙ୍ଗ ଭଳି,
'ସତ୍ୟ' ସତେ ତାହାଙ୍କର ନିତ୍ୟ ବାସସ୍ଥଳୀ ॥

ବ୍ରହ୍ମଜ୍ଞାନ ପାଇଁ ତପ, ଇନ୍ଦ୍ରିୟ ସଂଯମ,
ପ୍ରୟୋଜନ ଆଉ ଯେତେ ନିଷ୍କାମ କରମ ।
ଅଶୁଦ୍ଧି ଚରିତ୍ର ବଦାଭ୍ୟାସ କଦାଚାର
ଆଧ୍ୟାତ୍ମିକ ସାଧନାରେ ବୃଥା ହୁଏ ସାର ।
ବିଷ ଓ କ୍ରୂରତା ମଧ୍ୟେ ସାପ ମୁଣ୍ଡ ମଣି
ନିରର୍ଥକ ଯେଉଁପରି ଭାବି ଦେଲା କ୍ଷଣି ।

## ବପୁଧାରୀ ବ୍ରହ୍ମ-ବିଦ୍ୟା:

ଉପନିଷଦରେ ଅଛି ଯେ ବ୍ରହ୍ମ ବିଚାର
'ବ୍ରହ୍ମବିଦ୍ୟା' ବୋଲି ତାହା ଜଗତେ ପ୍ରଚାର ।
ତାହାକୁ ମଣିଷ ରୂପ କରି କଳପନା
ଦେହ ଅଙ୍ଗାଦିର ଏଥି ହୋଇଛି ବର୍ଣ୍ଣନା ।
ମଣିଷ ହୁଅଇ ଠିଆ ପାଦେ ଭାର ରଖି
ପାଦ ବିନା କିଏ ଠିଆ ହୋଇ ପାରିବ କି ?
'ବ୍ରହ୍ମବିଦ୍ୟା' ତେହ୍ନେ ତପ ଦମ କର୍ମ ଫଳେ
ସୁଗମ ସୁଲଭ ହୁଏ ସାଧକ ପାଶରେ ।
ତେଣୁ ଚିତ୍ତ ଏକାଗ୍ରତା ଇନ୍ଦ୍ରିୟ ସଂଯମ
ଈଶ୍ୱର ପ୍ରୀତିରେ କରି ନିଷ୍କାମ କରମ
ଏ ସକଳ 'ବ୍ରହ୍ମବିଦ୍ୟା'ଙ୍କର ପାଦ ସମ,
ତହିଁ ପରେ ବ୍ରହ୍ମବିଦ୍ୟା ଶୋଭେ ଅନୁପମ ।
ଚକ୍ଷୁ କର୍ଣ୍ଣ ମସ୍ତକାଦି ମଣିଷ ଦେହରେ
ବାହ୍ୟ ଅବୟବ ବୋଲି ଜଣା ନିରନ୍ତରେ ।

ଶରୀର ଭିତରେ କିନ୍ତୁ ଯେ ପ୍ରାଣ ନିହିତ
ତାହା ହିଁ ତ ସର୍ବସାର ବୋଲି ବିବେଚିତ ।
ଚାରି ବେଦ, ନରରୂପୀ ଏ 'ବ୍ରହ୍ମ ବିଦ୍ୟା'ର
ବାହ୍ୟ ଅବୟବ ବୋଲି କରିବ ବିଚାର ।

ତାର ଅଭ୍ୟନ୍ତରେ 'ବ୍ରହ୍ମବିଦ୍ୟା' ପ୍ରାଣସମ
ଦୀପ୍ତିମାନ ହୋଇ ଶୋଭା ପାଏ ଅନୁପମ ।
ଶରୀର ଓ ପ୍ରାଣ ଭିନ୍ନ ହେଲେ ପଛେ ହେଉ
କିନ୍ତୁ ଅପରକୁ ଛାଡି ନ ପାରନ୍ତି କେହୁ ।
ତେଣୁ ବ୍ରହ୍ମବିଦ୍ୟା କେହି ଲଭିବା ନିମନ୍ତେ
ବେଦାଦି ସ୍ୱାଧ୍ୟାୟ କରି ଥାଆନ୍ତି ନିରତେ ।
କାୟମନୋବାକ୍ୟେ ହେବା କପଟ ରହିତ
ସଂସାରେ ଏହାହିଁ "ସତ୍ୟ "ବୋଲି ଅଭିହିତ ।
କାୟମନୋବାକ୍ୟେ ଯିଏ କପଟ ରହିତ
ତାଙ୍କ ହୃଦେ ବ୍ରହ୍ମ ହୋଇଥାନ୍ତି ପ୍ରକାଶିତ ।
ଛଳନା କପଟ ପୂର୍ଣ୍ଣ ମଳିନ ଦୂଷିତ
ହୃଦୟରେ ବ୍ରହ୍ମବିଦ୍ୟା ନୁହନ୍ତି ଉଦିତ ।
ମଣିଷ ରୂପୀ ଏ ବ୍ରହ୍ମବିଦ୍ୟାର ଆଶ୍ରୟ
"ସତ୍ୟ "ବୋଲି ତେଣୁ ଶ୍ରୁତି କରିଛି ନିର୍ଣ୍ଣୟ ॥

**ମନ୍ତ୍ର ନଅ**

**ଯୋ ବା ଏତାମେବଂ ବେଦାପହତ୍ୟ ପାପ୍ମାନମନନ୍ତେ ସ୍ୱର୍ଗେ ଲୋକେ ଜ୍ୟେୟେ ପ୍ରତିତିଷ୍ଠତି ପ୍ରତିତିଷ୍ଠତି ॥ ୯ ॥**

ଏପରି ଜାଣନ୍ତି ବ୍ରହ୍ମବିଦ୍ୟାକୁ ଯେ ଜନ,
ନିଜକୁ ସକଳ ପାପୁଁ କରି ବିମୋଚନ,
ଅନନ୍ତ ନିବାସ ସ୍ୱର୍ଗଲୋକେ ସେ ଗମନ୍ତି
ବ୍ରହ୍ମେ ସ୍ଥିତ ହୋଇ ସଦା ଅମୃତ ଲଭନ୍ତି ॥ ୯ ॥

କେନୋପନିଷଦ ସମାପ୍ତ



**ବହୁ ବହୁ ଉପମା, ଦୃଷ୍ଟାନ୍ତ ଓ ତୁଳନା ସନ୍ନିବେଶିତ**
**ସରଳ ସୁଲଳିତ ପଲ୍ଲବିତ ଭାଷାରେ**
**ଦର୍ଶନର ଗୂଢ଼ ତତ୍ତ୍ୱକୁ ସାଧାରଣ ପାଠକେ**
**ସହଜରେ ବୁଝି ପାରିବା ଭଳି**

## କବି ସତ୍ୟାନନ୍ଦଙ୍କ ଆଧ୍ୟାତ୍ମିକ ରଚନାବଳି

୧। **ଗୀତା** (ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଅଭିମତ ସହିତ)

୨। **ଛୋଟ ଓଡ଼ିଆ ଗୀତା**

୩। **ଶ୍ରୀରାମ ଚରିତ ମାନସ** ପ୍ରଥମ ଖଣ୍ଡ

୪। **ଶ୍ରୀରାମ ଚରିତ ମାନସ** ଦ୍ୱିତୀୟ ଖଣ୍ଡ

୫। ସ୍ୱାମୀ ଚିଦାନନ୍ଦ ସରସ୍ୱତୀଙ୍କ ଅଭିମତ ସହିତ **ଈଶୋପନିଷଦ୍**

୬। ସ୍ୱାମୀ ମହାମେଧାନନ୍ଦନାଥ ସରସ୍ୱତୀଙ୍କ ଶ୍ରୀମୁଖ ସହ **କେନୋପନିଷଦ୍**

୭। **କଠୋପନିଷଦ୍** (ପ୍ରକାଶ ଅପେକ୍ଷାରେ)

**ବେଦାନ୍ତ ପ୍ରଚାର ପରିଷଦ**
ଭୂମିକା, ପ୍ଲଟ ନମ୍ବର ୫୭୬
ପୋଷ୍ଟ : ଖଣ୍ଡଗିରି; ଭୁବନେଶ୍ୱର - ୩୦